# ପ୍ରଗତି ପଥେ କଟକ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା
## (୧୯୯୩-୯୪ ଫେବୃୟାରୀ ସୁଦ୍ଧା) :-

କ] ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ [ I R D P ] :—

୧-ମୋଟ ହିତାଧିକାରୀଙ୍କ ସଂଖ୍ୟା ... ... ୭୦୭୭
୨-ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ସଂଖ୍ୟା ୨୯୭୫
୩-ମହିଳା ହିତାଧିକାରୀଙ୍କ ସଂଖ୍ୟା ... ୨୯୦୯
୪-ହିତାଧିକାରୀଙ୍କ ନିମିତ୍ତ ମୋଟ ଆର୍ଥିକ ବ୍ୟୟ ଲକ୍ଷରେ
କ] ମୋଟ ଆର୍ଥିକ ସହାୟତା [ଲକ୍ଷରେ] ... ୧୯୭.୧୮
ଖ] ମୋଟ ଆର୍ଥିକ ଋଣ [ଲକ୍ଷରେ] ୨୮୭.୨୯

ଖ] ଆତ୍ମ ନିଯୁକ୍ତି ପାଇଁ ଗ୍ରାମାଞ୍ଚଳ ଯୁବ ସଂପ୍ରଦାୟଙ୍କୁ ତାଲିମ :—
୧-ମୋଟ ତାଲିମ ପାଇଥିବା ଗ୍ରାମ୍ୟ ଯୁବକ ଯୁବତୀଙ୍କ ସଂଖ୍ୟା ... ୬୦୨

ଗ] ଗ୍ରାମାଞ୍ଚଳରେ ମହିଳା ଶିଶୁ କଲ୍ୟାଣ ଯୋଜନା [dwcra]
୧-ମହିଳା ଓ ଶିଶୁ କଲ୍ୟାଣ ଯୋଜନାରେ ମୋଟ ମୋଟ ଆର୍ଥିକ ବ୍ୟୟ ୧.୫୦

ଘ] ଜବାହାର ରୋଜଗାର କାର୍ଯ୍ୟକ୍ରମ JRY :—
୧-ଜବାହାର ରୋଜଗାର କାର୍ଯ୍ୟକ୍ରମର ମୋଟ କର୍ମନିଯୋଗଣର ଶ୍ରମଦିବସ [ଲକ୍ଷରେ] ୯.୮୦
୨-ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ପାଇଁ ଶ୍ରମ ଦିବସ ... ୪.୪୮
୩-ମହିଳା ହିତାଧିକାରୀଙ୍କ ଶ୍ରମ ଦିବସ ... ୨.୦୩
୪-ଜବାହାର ଯୋଜନାରେ ମୋଟ ଆର୍ଥିକ ବ୍ୟୟ ୪୦୮.୭୦

ଙ] ଇନ୍ଦିରା ଆବାସ ଯୋଜନା [IAY] :—
୧-ଯୋଜନାରେ ହିତାଧିକାରୀଙ୍କୁ ଯୋଗାଇ ଦିଆଯାଇଥିବା ମାଗଣା ଗୃହ ସଂଖ୍ୟା ୩୦୩
ଇନ୍ଦିରା ଆବାସ ଯୋଜନାରେ ମୋଟ ଆର୍ଥିକ ବ୍ୟୟ [ଲକ୍ଷରେ] ୩୨.୨୬

ଚ] ନିଯୁକ୍ତ କୂପ ଯୋଜନା [MWS] :—
୧-ମୋଟ ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କୁ ମାଗଣାରେ ଯୋଗାଇଥିବା ନିଯୁକ୍ତ କୂପ ଯୋଜନାରେ ନିଯୁକ୍ତ କୂପ ସଂଖ୍ୟା ୫.୯୦
୨-ମୋଟ ଆର୍ଥିକ ଖର୍ଚ୍ଚ [ଲକ୍ଷରେ] ... ... ୫୪.୯୨

ଛ] କଳାପଟା ଅଭିଯାନରେ ବିଦ୍ୟାଳୟ ଗୃହ ନିର୍ମାଣ O B B :—
୧-ମୋଟ ବିଦ୍ୟାଳୟ ଗୃହ ନିର୍ମାଣର ସଂଖ୍ୟା ୪୯
୨-ବିଦ୍ୟାଳୟ ଗୃହ ନିର୍ମାଣର ଆର୍ଥିକ ବ୍ୟୟ [ଲକ୍ଷରେ] ୫୩.୬୩

ଜ] ଜୈବିକ ଗ୍ୟାସ ପ୍ଲାଣ୍ଟ :—
୧-ହିତାଧିକାରୀଙ୍କୁ ଯୋଗାଇ ଦିଆଯାଇଥିବା ଜୈବିକ ଗ୍ୟାସ ପ୍ଲାଣ୍ଟ ସଂଖ୍ୟା ୬୭୧
୨-ଜୈବିକ ଗ୍ୟାସ କାର୍ଯ୍ୟକ୍ରମରେ ମୋଟ ଆର୍ଥିକ ବ୍ୟୟ— ... ୧୯.୮୬

ଝ] ଜାତୀୟ ଉନ୍ନତ ଚୁଲି କାର୍ଯ୍ୟକ୍ରମ :—
୧-ହିତାଧିକାରୀଙ୍କୁ ଯୋଗାଇ ଦିଆଯାଇଥିବା ମୋଟ ଉନ୍ନତ ଚୁଲି ସଂଖ୍ୟା ୧୨୮୧୨
୨-ମୋଟ ଉନ୍ନତ ଚୁଲିରେ ଆର୍ଥୀକ ବ୍ୟୟ— ... ... ୬.୯୧

ଶ୍ରୀ ରବୀନ୍ଦ୍ର ନାଥ ରଥ, ଆଇ ଏ ଏସ୍
ଅଧ୍ୟକ୍ଷ, ଜିଲ୍ଲାପାଳ କଟକ

ଶ୍ରୀ ଦିଗମ୍ବର ମହାନ୍ତି, ଓ. ଏ. ଏସ୍
ପ୍ରକଳ୍ପ ଅଧିକାରୀ

ଉତ୍କଳକବି

# ଜଗନ୍ନାଥ ପାଣି ସ୍ମରଣିକା

୧୯୯୪

କବିଙ୍କ ୧୫୯ ତମ ଜୟନ୍ତୀ ଉପଲକ୍ଷେ

ସମ୍ପାଦନା ମଣ୍ଡଳୀ

ସାତକଡ଼ି ହୋତା

ବିନୋଦ ବିହାରୀ ପଲାଇ

ଡଃ ଉପେନ୍ଦ୍ର ପ୍ରସାଦ ନାୟକ

ଜଗନ୍ନାଥ ପାଣି ସ୍ମୃତି ସଂସଦ

ଭୁବନେଶ୍ୱର

# ଯହିଁରେ ଏ ସଂଖ୍ୟା ସମୃଦ୍ଧ





# ସଂପାଦକୀୟ

ସାହିତ୍ୟ ସମସ୍ତର ପ୍ରତିନିଧିତ୍ୱ କରେ ବୋଲି କୁହାଯାଏ । ଏହି ଉକ୍ତିଟିର ଯଥାର୍ଥତା ସାଧାରଣ ଭାବରେ ପ୍ରତିପାଦନ କରିବାର ପ୍ରୟାସ ସଂପୃକ୍ତ ସମୟର ମଣିଷଙ୍କୁ ସେପରି କୌଣସି ଜଟିଳ ସମସ୍ୟାରେ ପକାଏ ନାହିଁ । କିନ୍ତୁ ବିଷୟଟିକୁ ଗଭୀର ଭାବରେ ଚିନ୍ତା କଲେ ତହିଁରୁ ବହୁ ତାତ୍ତ୍ୱିକତାର ଉନ୍ମେଷ ପରିଲକ୍ଷିତ ହୁଏ । ମୌଳିକତଃ ତାହା ହେଉଛି ଜୀବନ-ପ୍ରକାଶର ଧାରା, ଯାହା ବ୍ୟକ୍ତି ଭାବରେ ଓ ସମାଜର ଏକ ଅଂଶ ଭାବରେ ମଣିଷର ସ୍ଥିତି ସମ୍ବନ୍ଧୀୟ ଚେତନା, ସଂସ୍କୃତି ଓ ସଭ୍ୟତା ଇତ୍ୟାଦି । ସାହିତ୍ୟ ଏ ସବୁକୁ ନିଜଠାରେ ଚିନ୍ତା, ଚେତନା, କଳା ଓ କୃଷ୍ଟିର ସ୍ପନ୍ଦନ ଦେଇ ଗତିଶୀଳ କରେ ଏବଂ ସ୍ୱୀୟ ପରିଚୟ ମଧ୍ୟରେ ଆତ୍ମୀୟ କରିନିଏ । ଜୀବନକୁ ଉପଲବ୍ଧି କରିବାର ପ୍ରସାରଣଶୀଳ ସାହିତ୍ୟିକ ବ୍ୟକ୍ତିତ୍ୱର ସାଫଲ୍ୟ ଏହି ପ୍ରକାର ଅନ୍ତରୀୟତାରେ ହିଁ ପରିସ୍ଫୁଟ ହୁଏ ।

ଜଗନ୍ନାଥ ପାଣିଙ୍କ ସୃଜନଶୀଳ ସାହିତ୍ୟିକ ବ୍ୟକ୍ତିତ୍ୱରେ ଯେଉଁ ଆତ୍ମୀୟତା ଉପଲବ୍ଧି ହୁଏ, ତାଙ୍କ ସୃଷ୍ଟି ମାଧ୍ୟମରେ ତାହା ତତ୍କାଳୀନ ସମାଜିକ ରୁଚି ବିଷୟରେ କେବଳ ନୁହେଁ ସର୍ବକାଳୀନ ମଣିଷର ଅନ୍ତରଙ୍ଗ ଅବସ୍ଥାର ସୂଚନା ବୋଲି କହିଲେ ଯଥାର୍ଥ ହେବ । ଗତ ଯୁଗୀୟ ଚିନ୍ତାରେ ବ୍ୟକ୍ତି ଓ ସମାଜର ଆଦର୍ଶ ସହିତ କାବ୍ୟିକ ପାଣ୍ଡିତ୍ୟ ଓ ପ୍ରବାହ ତତ୍ପରବର୍ତ୍ତୀ ସାହିତ୍ୟିକ ପରିସରରେ ପରିବର୍ତ୍ତନର ଧାରା ଗ୍ରହଣ କରିଥିଲେ ମଧ୍ୟ ପୌରାଣିକ ଐତିହ୍ୟବୋଧ ଲୋପପାଇନାହିଁ । ସମସ୍ତ ଉଲ୍ଲାସ ଓ ଆନନ୍ଦ ମଧ୍ୟରେ ଶୃଙ୍ଖଳିତ ଜୀବନଧାରା ବ୍ୟକ୍ତି ଓ ସମାଜ ପାଇଁ ଆଦର୍ଶ ହୋଇ ରହିଆସିଛି । କାବ୍ୟରସ ଓ ରୁଚି ସାମୟିକ ସମୀଚୀନ ସୀମା ଅତିକ୍ରମ କଲଭଳି ଅନୁଭୂତ ହେଉଥିଲେ ମଧ୍ୟ ନୈତିକ ସ୍ଥିତିରୁ ସ୍ଖଳିତ ହୋଇନାହିଁ । ଏହି ନୀତି ହିଁ ପୌରାଣିକ ଭାରତୀୟ ଜୀବନ ଧାରାର ବୈଶିଷ୍ଟ୍ୟ ଓ ଭିତ୍ତି ।

ରାଜକୀୟ ଉପଭୋଗ ମଧ୍ୟରେ ଅହଂକାର ଓ ଆଧିପତ୍ୟର ତାଡନା ସେ କାଳରେ ଥିଲା । ଏ କାଳରେ ରାଜା ନଥିଲେ ମଧ୍ୟ ରାଜକୀୟ ଆକାଂକ୍ଷା ସହିତ ଉତ୍ପୀଡନ ରହିଛି । ସେ ଉତ୍ପୀଡ଼ନ ସ୍ୱାଭାବିକ ଭାବରେ ସଂଘର୍ଷ ମଧ୍ୟ ଦେଇ ବିବର୍ତ୍ତିତ ଓ ଅପସାରିତ ହୁଏ । ସେ ସମୟର ସାହିତ୍ୟ ତତ୍କାଳୀନ ସମାଜର ଜୀବନ ଧାରାକୁ ଯେପରି ଚିତ୍ରଣ କରିଥିଲା । ବର୍ତ୍ତମାନ ସମାଜର ଜୀବନ-ପ୍ରବାହକୁ ବର୍ତ୍ତମାନ ସାହିତ୍ୟ ଚିତ୍ରଣ କରିବ ।

ତେଣୁ ଏ କାଳର ସାହିତ୍ୟ ସହିତ ସେ କାଳର ସାହିତ୍ୟକୁ ତୁଳନା କରିବାର ପ୍ରୟାସରେ ଏକ ଯଥାର୍ଥ ବସ୍ତୁନିଷ୍ଠ ଦୃଷ୍ଟି ରହିବା ବାଞ୍ଛନୀୟ । ଜଗନ୍ନାଥ ପାଣି ବା ତାଙ୍କ ପୂର୍ବବର୍ତ୍ତୀ କବି ବା ନାଟ୍ୟକାର ଏବଂ ତାଙ୍କ ପରବର୍ତ୍ତୀ କବି ବା ନାଟ୍ୟକାରଙ୍କ ମଧ୍ୟରେ ସାମ୍ୟ ଓ ଅସାମ୍ୟ ଦେଖାଦେବାର କାରଣ ନିର୍ଦ୍ଧାରଣ କରାଯିବା ଉଚିତ । ବିନା ନିରୀକ୍ଷଣରେ ଯାହା ଇଚ୍ଛା ତାହା ଲେଖି ଦେଲେ ହେବନାହିଁ । ସେ ନିରୀକ୍ଷଣ ହିଁ ଦିଗ୍‌ଦର୍ଶନ ଦେବ ।

ଓଡ଼ିଆ ସାହିତ୍ୟର ଐତିହାସିକ ସ୍ଥିତି ଓ ଗତିର ପ୍ରବାହକୁ କଳ୍ପୋଳିତ ଜଗନ୍ନାଥ ପାଣିଙ୍କ କାବ୍ୟ ଓ କବିତ୍ୱକୁ ଉପେକ୍ଷା କଲେ ବିଚାର ତ୍ରୁଟିପୂର୍ଣ୍ଣ ହୋଇ ରହିଯିବ, କାରଣ ତାହା ରୀତି ଯୁଗର ଶେଷ କାଳରୁ ଆଧୁନିକ ଓଡ଼ିଆ ସାହିତ୍ୟର ଅଙ୍କୁରୋଦ୍‌ଗମ ଓ ଅଙ୍କୁର କେତେ କାଳ ପର୍ଯ୍ୟନ୍ତ ଗତି କରିଛି । ଜୀବନ ପରି ସାହିତ୍ୟ ଓ ସଂସ୍କୃତିର ପ୍ରବାହ ଅବିଚ୍ଛିନ୍ନ । ଗତି ଓ ସ୍ଥିତିରେ ପରିବର୍ତ୍ତନ ପରିଲକ୍ଷିତ ହୋଇପାରେ ମାତ୍ର ତାହା ଯେ ଅନ୍ତରଙ୍ଗରେ ସୃଜନଶୀଳ ଭାବରେ ମତାନ୍ତରର ଅବକାଶ ନାହିଁ । ସେହି ବିଚାରରେ ଜଗନ୍ନାଥ ପାଣିଙ୍କର କାବ୍ୟକୃତି ଓ ନାଟକୀୟ ଦୃଷ୍ଟି ଓ ଦିଗ ଯଥାର୍ଥ ବିଚାର ଦ୍ୱାରା ପ୍ରତିପାଦିତ ହେବା ବିଧେୟ, ଓଡ଼ିଆ ସାହିତ୍ୟର ଆତ୍ମିକ ଓ ଆଙ୍ଗିକ ଧାରା ନିର୍ଣ୍ଣୟ ପାଇଁ ତାହା ପ୍ରୟୋଜନ ।

ବିନୋଦ ବିହାରୀପଲ୍ଲଇ



କବିଙ୍କ ସାଧନା ପୀଠ ନଳେଶ୍ୱର ମନ୍ଦିର

# ପାଣି ସାହିତ୍ୟ ପ୍ରଚାରରେ ଆମେ ଓ ଆମ ଅନୁଷ୍ଠାନ

ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ

ଏପ୍ରିଲ ୧୯୯୪, ଚଉଦ ତାରିଖ—ମହା ବିଷୁବ ସଂକ୍ରାନ୍ତି । ବିଷୁବ ମିଳନ ଓ ବିଷୁବ ଆସରରେ ଆଜି ସାରା ଓଡ଼ିଶା ଆନନ୍ଦ ମୁଖରିତ । ସାହିତ୍ୟ ଓ ସଂସ୍କୃତିର ଏହି ଆକର୍ଷଣୀୟ ପରିବେଶ ମଧ୍ୟରେ ଆମେ ଆଜି ମଧ୍ୟ ପାଳନ କରୁଛେ ଲୋକ କବି ଜଗନ୍ନାଥ ପାଣିଙ୍କର ୧୫୯ ତମ ଜୟନ୍ତୀ ଉତ୍ସବ ।

ରାଜଧାନୀ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପରେ ପ୍ରତିବର୍ଷ ପରି ଏବର୍ଷ ତା ୧୪ ଓ ୧୫ ତାରିଖ ଦୁଇଦିନ ଧରି ଆକର୍ଷଣୀୟ ଜୟନ୍ତୀ ଉତ୍ସବ ପାଳନ କରାଯାଉଛି । ପ୍ରଥମ ଦିନ ଉତ୍ସବରେ ରାଜ୍ୟ ପେନ୍‌ସନ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପାଟ୍ଟଶାଣୀ, ପ୍ରଫେସର ଡ଼ଃ ନିତ୍ୟାନନ୍ଦ ଶତପଥୀ, ଡଗର ସଂପାଦକ ଓ ପୂର୍ବତନ ମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର ପ୍ରମୁଖ ଯୋଗ ଦେଇଛନ୍ତି ଓ ଶେଷରେ ଅଭିନୟ ନାଟ୍ୟ ସଂସ୍ଥା ତରଫରୁ କବିଙ୍କ ରଚିତ ଗୀତିନାଟ୍ୟ "ହାରାବତୀ ହରଣ" ଅଭିନୀତ ହେବାର କାର୍ଯ୍ୟକ୍ରମ ରହିଛି । ୨ୟ ଦିବସରେ ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ବୈରାଗୀ ଚରଣ ଜେନା ନାଟ୍ୟକାର ଶ୍ରୀଯୁକ୍ତ ବିଶ୍ୱଜିତ ଦାସ ଯୋଗ ଦେବାର କାର୍ଯ୍ୟକ୍ରମ ରହିଛି । ସେଦିନ ଶିଳାଶ୍ରୀ ସାହିତ୍ୟ ସଂସ୍କୃତି ପରିଷଦ ପକ୍ଷରୁ କବିଙ୍କ ରଚିତ ଗୀତିନାଟ୍ୟ 'ଉଷାବତୀ ହରଣ' ମଞ୍ଚସ୍ଥ ହେବାର କାର୍ଯ୍ୟକ୍ରମ ରହିଛି ।

ସେହିପରି କବିଙ୍କ ଜନ୍ମ ସ୍ଥାନ ନଳାଙ୍ଗ ଠାରେ ତା ୧୪, ୧୫ ଓ ୧୬ ତାରିଖ ତିନି ଦିନ ଧରି ଲୋକ କବି ଜଗନ୍ନାଥ ପାଣିଙ୍କର ୧୫୯ ତମ ଜୟନ୍ତୀ କାର୍ଯ୍ୟକ୍ରମ ମହା ସମାରୋହରେ ପାଳନ କରାଯିବାର ଆୟୋଜନ କରାଯାଉଛି । ନଳାଙ୍ଗସ୍ଥ ଜଗନ୍ନାଥ ପାଣି ସ୍ମୃତି କମିଟି ଆନୁକୂଲ୍ୟରେ ସ୍ଥାନୀୟ ଲୋକକବି ମଣ୍ଡପରେ ଉତ୍ସବର ପ୍ରସ୍ତୁତି କାର୍ଯ୍ୟ ଚାଲିଛି । ଏଥିରେ ଓଡ଼ିଶାର ଖ୍ୟାତନାମା ସାହିତ୍ୟିକ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ, କବି ଅଧ୍ୟାପକ ଶ୍ରୀଯୁକ୍ତ ନୃସିଂହ କୁମାର ରଥ, ଶ୍ରୀଯୁକ୍ତ ସାତକଡ଼ି ହୋତା ଓ ଡ଼ଃ ଉପେନ୍ଦ୍ର ପ୍ରସାଦ ନାୟକ ପ୍ରମୁଖ ଯୋଗ ଦେଉଛନ୍ତି । ଏତଦ୍ ବ୍ୟତୀତ ୧୫ ତାରିଖ ସନ୍ଧ୍ୟା ଓ ୧୬ ତାରିଖ ସନ୍ଧ୍ୟାରେ କବିଙ୍କ ରଚିତ ଗୀତିନାଟ୍ୟ ମାନ

ନଲାଙ୍ଗସ୍ଥ ଜଗନ୍ନାଥ ପାଣି ନାଟ୍ୟ ସଂସ୍ଥା ତରଫରୁ ଓ ଭୁବନେଶ୍ୱରସ୍ଥ ଶିଳାଶ୍ରୀ ସାହିତ୍ୟ ସଂସ୍କୃତି ପରିଷଦ ତରଫରୁ ମଞ୍ଚସ୍ଥ କରାଯିବାର ଆୟୋଜନ କରା ଯାଉଛି ।

ଭୁବନେଶ୍ୱରସ୍ଥ ଜଗନ୍ନାଥ ପାଣି ସ୍ମୃତି ସଂସଦ ତରଫରୁ ପ୍ରତିବର୍ଷ ଭଳି ଏବର୍ଷ ମଧ୍ୟ କବିଙ୍କ ଜୀବନୀ ଓ ସାହିତ୍ୟ କୃତି ଉପରେ ଆଧାରିତ ଏକ ମନୋରମ ସ୍ମରଣିକା ପ୍ରକାଶ ପାଉଛି ।

ଲୋକକବି ଜଗନ୍ନାଥ ପାଣିଙ୍କ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ଭୁବନେଶ୍ୱରସ୍ଥ ଜଗନ୍ନାଥ ପାଣି ସ୍ମୃତି ସଂସଦ, ନଲାଙ୍ଗସ୍ଥ ଜଗନ୍ନାଥ ପାଣି ସ୍ମୃତି କମିଟି ଓ ଭଦ୍ରକ ସାହିତ୍ୟ ସଂସ୍କୃତି ପରିଷଦ ବହୁ ଉଦ୍ୟମ କରି ଆସୁଅଛନ୍ତି । ଯାହା ଫଳରେ ରାଜ୍ୟ ସଂସ୍କୃତି ବିଭାଗ ତରଫରୁ ଜଗନ୍ନାଥ ପାଣି ଗ୍ରନ୍ଥାବଳୀର ତିନିଖଣ୍ଡ ରଚନାବଳୀ ପ୍ରକାଶ ପାଇପାରିଛି । ଜଗନ୍ନାଥ ପାଣି ସ୍ମୃତିସଂସଦ ତରଫରୁ ପ୍ରତିବର୍ଷ "ଜଗନ୍ନାଥ ପାଣି ସ୍ମରଣିକା" ପ୍ରକାଶ ପାଉଛି ଏଥିରେ ପ୍ରକାଶିତ ମୁଖ୍ୟ ବିଷୟ ଗୁଡ଼ିକ ନେଇ "ଜଗନ୍ନାଥ ପାଣି ପରିକ୍ରମା"ର ଦୁଇଖଣ୍ଡ ପ୍ରକାଶପାଇ ସାରିଛି । କବିଙ୍କ ରଚିତ ନାଟ୍ୟମାନଙ୍କ ମଧ୍ୟରୁ "ହାରାବତୀ ହରଣ" ଶତାବ୍ଦୀ ପ୍ରକାଶନୀ ପକ୍ଷରୁ ଓ "ମହୀରାବଣ ବଧ" ଆମ ସଂସ୍ଥା ତରଫରୁ ଡ଼. ଉପେନ୍ଦ୍ର ପ୍ରସାଦ ନାୟକଙ୍କ ପ୍ରଚେଷ୍ଟାରେ ନାଟ୍ୟରୂପ ଦିଆଯାଇ ପ୍ରକାଶିତ ହୋଇଛି ।

ଏତଦ୍ ବ୍ୟତୀତ ଆକାଶବାଣୀ କଟକ, ଦୂରଦର୍ଶନ କେନ୍ଦ୍ର ଜରିଆରେ କବିଙ୍କ ରଚିତ ବିଭିନ୍ନ ଗୀତିନାଟ୍ୟ ଗୁଡ଼ିକ ପରିବେଷିତ ହୋଇପାରିଛି । ଓଡ଼ିଶାର ବିଭିନ୍ନ ଦୈନିକ ସମ୍ବାଦପତ୍ର ମାନଙ୍କରେ ଲୋକ କବିଙ୍କ ଉପରେ ଆଧାରିତ ତତ୍ତ୍ୱ ଓ ତଥ୍ୟ ଭିତ୍ତିକ ଲେଖାସବୁ ପ୍ରକାଶିତ ହୋଇ କବିଙ୍କ କୃତିତ୍ୱର ପ୍ରସାର ଓ ପ୍ରଚାର କାର୍ଯ୍ୟରେ ସହାୟକ ହୋଇପାରିଛି ।

ଏହା ଆମ ପାଇଁ ଓ ଆମ ଅନୁଷ୍ଠାନ ପାଇଁ ସଫଳତାର ସଙ୍କେତ । ଭଗବାନ କରନ୍ତୁ ସେ ଆମକୁ ଶକ୍ତି ପ୍ରଦାନ କରନ୍ତୁ ଆମେ ଯେପରି ଆଗାମୀ ଦିନମାନଙ୍କରେ କବି ଜଗନ୍ନାଥ ପାଣିଙ୍କ ସାହିତ୍ୟର ପ୍ରଚାର ଓ ପ୍ରସାର ତଥା କବିଙ୍କ ପ୍ରତିଭା ପୂଜାରେ ଆମେ ସମ୍ପୂର୍ଣ୍ଣ ଭାବେ ସଫଳ କାମୀ ହେଉ ।



ମହାବିଷୁବ ସଂକ୍ରାନ୍ତି
୧୯୯୪

# ସଂପାଦକଙ୍କ କଲମରୁ

ଜଗନ୍ନାଥ ପାଣି ଏକ ବିସ୍ମୃତ ପ୍ରତିଭା । ଊନବିଂଶ ଶତାବ୍ଦୀରେ ତାଙ୍କର ଜନ୍ମ, ବିକାଶ କାଳ ଏବଂ ତିରୋଧାନ । ସାହିତ୍ୟ ସଂସ୍କୃତି ପାଇଁ ସମଗ୍ର ଜୀବନ ବିନିଯୋଗ କରିଥିଲେ ହେଁ ପ୍ରଚାର ଓ ପ୍ରସାର ଅଭାବରୁ ଦୀର୍ଘକାଳ ଧରି ଲୋକ ଲୋଚନ ଅଗୋଚରରେ ଲୁଚି ରହିଥିଲେ ।

ଜଗନ୍ନାଥ ପାଣିଙ୍କ ପ୍ରତିଭାର ପ୍ରଚାର ନିମନ୍ତେ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ଉଦ୍ୟମ ତଥା ପୃଷ୍ଠପୋଷକତାରେ ରାଜଧାନୀରେ କବିଙ୍କ ନାମରେ ଏକ ସ୍ମୃତି ସଂସଦ ଗଠନ କରାଯାଇଛି । ସେହି ସ୍ମୃତି ସଂସଦ ଦ୍ୱାରା ୧୯୮୫ ମସିହାରୁ ଏଯାବତ୍ ନାନାବିଧ ସାରସ୍ୱତ କାର୍ଯ୍ୟକ୍ରମମାନ କରାଯାଇ ସ୍ୱର୍ଗତ ପାଣିଙ୍କ ସାହିତ୍ୟ ଆଲୋଚନା ପରିପେକ୍ଷୀରେ ଓଡ଼ିଆ ସାହିତ୍ୟ ସଂସ୍କୃତିର ଅଭିବୃଦ୍ଧି ନିମନ୍ତେ ନାନାବିଧ କାର୍ଯ୍ୟାନୁଷ୍ଠାନମାନ ସମ୍ପନ୍ନ ହୋଇଆସୁଅଛି ।

ଜଗନ୍ନାଥ ପାଣି ସ୍ମୃତି ସଂସଦ ଏକ ବିଧିବଦ୍ଧ ରେଜିଷ୍ଟ୍ରାର୍ଡ ଅନୁଷ୍ଠାନ । ସଂସଦର ନିର୍ବାଚନ କରାଯାଇ ସଭାପତି ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ, ଉପ-ସଭାପତି ଶ୍ରୀ ସାତକଡ଼ି ହୋତା, ସଂପାଦକ ଡଃ ଉପେନ୍ଦ୍ର ପ୍ରସାଦ ନାୟକ, ସହ ସଂପାଦକ ଶ୍ରୀ କାଶୀନାଥ ଦାସ, କୋଷାଧ୍ୟକ୍ଷ ଶ୍ରୀ ଏକାଦଶୀ ପ୍ରସାଦ ବୋଇତାଇ ଓ ଡଃ କୃଷ୍ଣ ଚରଣ ସାହୁ, ବିନୋଦ ବିହାରୀ ପଲଇ, ଡଃ ବସନ୍ତ କୁମାର ଦାସ, ଶ୍ରୀ ପ୍ରଭଞ୍ଜନ ପରିଡ଼ା, ଡଃ ମନୋରମା ମହାପାତ୍ର ଓ ବ୍ରହ୍ମାନନ୍ଦ ସାହୁ କାର୍ଯ୍ୟକାରୀ ସମିତି ସଭ୍ୟ ଭାବେ ନିର୍ବାଚିତ ହୋଇଛନ୍ତି । ପଣ୍ଡିତ ନୀଳମଣି ମିଶ୍ର, ଡଃ ଭଗବାନ ପଣ୍ଡା, ଗୀତା ହୋତା, ପ୍ରମିଳା ମିଶ୍ର, ଦାଶରଥୀ ବେହେରା ଓ ହରେକୃଷ୍ଣ ପାତ୍ର ବିଶେଷ ନିମନ୍ତ୍ରିତ ସଭ୍ୟଭାବେ ମନୋନୀତ ହୋଇଛନ୍ତି ।

ଏହି ସ୍ମୃତି ସଂସଦର ବ୍ୟବସ୍ଥାପନାରେ ପ୍ରତିବର୍ଷ କବିଙ୍କ ଜୟନ୍ତୀ ସମାରୋହ ଓ ଶ୍ରାଦ୍ଧୋତ୍ସବ ପାଳନ କରାଯାଇଥାଏ । ୧୯୮୫ ମସିହାରୁ ଏଯାବତ୍ ପ୍ରତିବର୍ଷ କବିଙ୍କ ରଚିତ ଗୀତାଭିନୟ ପରିବେଷଣ କରାଯାଉଛି । ଏଥି ନିମନ୍ତେ ମିଳନୀ, ଅଭିନୟ ଶତାବ୍ଦୀର କଳାକାର, ଶିଳାଶ୍ରୀ ସାହିତ୍ୟ ସଂସ୍କୃତି ପରିଷଦ, ଯାତ୍ରୀ, ଶାସ୍ତ୍ରୀ ନଗର ସାଂସ୍କୃତିକ ସଂସଦ ଓ ଜନକଲ୍ୟାଣ କ୍ଲବ ଆଦି ନାଟ୍ୟ ସଂସ୍ଥା ଗୁଡ଼ିକଙ୍କ ସହଯୋଗ ଭୁଲିବାର ନୁହେଁ ।

ଏ ବର୍ଷ ଏ ଜୟନ୍ତୀ ଉତ୍ସବ ନିମନ୍ତେ ଆମର ଶୁଭେଚ୍ଛୁ, ପୃଷ୍ଠପୋଷକ, ବିଜ୍ଞାପିତ ଦାତା, ବେତାର, ଦୂରଦର୍ଶନ ଓ ଦୈନିକ ସମ୍ବାଦପତ୍ର, ଆମର ଅତିଥି ବୃନ୍ଦ, ଲେଖକ ଲେଖିକା ବୃନ୍ଦ ଏବଂ ସର୍ବୋପରି ଆପଣମାନଙ୍କ ସହଯୋଗ ଆମର ସ୍ମରଣୀୟ ହୋଇ ରହିବ ।

ତଥାପି ବହୁ ବିଳମ୍ବରେ ହେଲେ ହେଁ କବିଙ୍କର ପ୍ରତିଭା ପୂଜାକରି ନିଜକୁ ଗୌରବାନ୍ୱିତ ମନେ କରୁଅଛୁ । ଆପଣମାନଙ୍କ ସାହାଯ୍ୟ ସହଯୋଗ ଓ ସଦିଚ୍ଛା ପାଇଲେ ଏହା ଯେ ଅଧିକ ସୁଦୂର ପ୍ରସାରୀ ହୋଇପାରିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

**ଉପେନ୍ଦ୍ର ପ୍ରସାଦ ନାୟକ**



ନଲାଙ୍ଗରେ କବିଙ୍କ ସ୍ମୃତି ପୀଠ



କବିଙ୍କ ଜନ୍ମସ୍ଥାନ ନଲାଙ୍ଗ ଶାସନ

# ଜଗନ୍ନାଥ ପାଣିଙ୍କର ପାଲା ସମୂହ
# ଏକ ପର୍ଯ୍ୟାଲୋଚନା

ସଂଘମିତ୍ରା ମିଶ୍ର

'ପାଲା' ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଲୋକନାଟକ । ଏହା ସାଧାରଣତଃ ଆକୃତି ଦୃଷ୍ଟିରୁ ଦୁଇପ୍ରକାର । ଯଥା: ବସିକରି କରାଯାଉଥିବା ବୈଠକୀପାଲା ଓ ଠିଆ ହୋଇ, ଚାମର ହଲାଇ, ବିଭିନ୍ନ ଅଙ୍ଗଭଙ୍ଗି କରି କରାଯାଉଥିବା ଠିଆପାଲା । କିନ୍ତୁ ସଜ୍ଜା ଓ ସ୍ୱରୂପ ଦୃଷ୍ଟିରୁ ଆନନ୍ଦପ୍ରଦାନ ସହିତ ଉପଦେଶାତ୍ମକତା ଏ ଉଭୟରେ ସମାନ । 'ପାଲା' ର ଉତ୍ପତ୍ତି ସମ୍ପର୍କରେ ବହୁମତ ଦେଖିବାକୁ ମିଳେ । କେହି ଆଲୋଚକ ଏହାକୁ 'ପଲ୍ଲବୀ' ଶବ୍ଦର ଅପଭ୍ରଂଶରୁ ସୃଷ୍ଟି ହୋଇଛି ବୋଲି କହନ୍ତି । କେହି 'ପାଞ୍ଚାଳୀ' ଶବ୍ଦରୁ ସୃଷ୍ଟି ବୋଲି ମଧ୍ୟ କହିଥାଆନ୍ତି । କେହି 'ପାଲଅ' ବା 'ପାଲି' ରୁ 'ପାଲା' ଶବ୍ଦ ଆସିଛି ବୋଲି ମନେ କରନ୍ତି । ଆଜି ପର୍ଯ୍ୟନ୍ତ ଓଡ଼ିଶାର ଗାଁ ଗହଳରେ ପ୍ରଚଳିତ ପାଲାରେ 'କବିକଣ୍ଠି'ଙ୍କର ଭଣିତା ଶୁଣି ଅନେକ କହନ୍ତି ଯେ ଏହା ସିଧା ସଳଖ ବଙ୍ଗଳାରୁ ଆସିଛି କିନ୍ତୁ ବିଦଗ୍ଧ ଆଲୋଚକ ୯ ଧୀରେନ ଦାସଙ୍କ ମତରେ—

ବଙ୍ଗେ ପାଲାକାର ଅଟେ ଗ୍ରାମ୍ୟ ନାଟ୍ୟକାର  
ଓଡ଼ିଶାରେ ପାଲା କଲେ ହୁଏ ପାଲାକାର  
ବଙ୍ଗଦେଶେ ବଇଠକୀ ପାଲା ସିନା ଅଛି  
ଠିଆ ପାଲା କିନ୍ତୁ ହେ କେହି କି ଦେଖିଛି ।  
ବଙ୍ଗେ ଅଛି ଅନୁଷ୍ଠାନ ନାଁ 'କବିର ଗାନ'  
ଠିଆ ପାଲାଠାରୁ ତାହା ସମ୍ପୂର୍ଣ୍ଣ ବିଭିନ୍ନ । (ପାଲା ଇତିହାସ ପାଲା-ପୃ ୩)

ତାଙ୍କ ମତରେ ଖ୍ରୀଷ୍ଟ ଜନ୍ମର ୫୦୦ ବର୍ଷ ପୂର୍ବରୁ ବୌଦ୍ଧ ଧର୍ମ ପ୍ରଚଳିତ ହୋଇଥିଲା । ବୁଦ୍ଧ ବଚନ 'ତ୍ରିପିଟକ'ର ଭାଷା ହେଉଛି 'ପାଲି' ଯାହାର ଅର୍ଥ ଈଶ୍ୱରଙ୍କର ପ୍ରଶସ୍ତି ଗାନ । ଅଶୋକ ଏହି ଭାଷାରେ ଧର୍ମ ପ୍ରଚାର କରି ଯଶସ୍ୱୀ ହୋଇଥିଲେ । ସଂସ୍କୃତରେ 'ପାଲି' ଶବ୍ଦର ଅର୍ଥ ପ୍ରଶଂସା ବା କୀର୍ତ୍ତନ ପ୍ରଭୃତି । ଏହି 'ପାଲି'ରୁ 'ପାଲା' ଶବ୍ଦ ସୃଷ୍ଟି, ପଦ ପଦାଣୀ ବିଭିନ୍ନ ନୃତ୍ୟ ସଙ୍ଗୀତ ଅନୁଷ୍ଠାନ ନକରି 'ପାଲା' କରି ଧର୍ମ ପ୍ରଚାର କରିବାକୁ ଅଶୋକ ଚାହିଁଥିଲେ । ପରବର୍ତ୍ତୀ କାଳରେ ଓଡ଼ିଶାର ରାଜା ଐର ଖାରବେଳ ନୃତ୍ୟ, ବାଦ୍ୟ, ସଙ୍ଗୀତ ପ୍ରତି ଆଗ୍ରହୀ ଥିଲେ ବୋଲି ହାତୀ ଗୁମ୍ଫା ଶିଳା-

ଲେଖରୁ ସ୍ପଷ୍ଟ ପ୍ରମାଣମିଳେ । 'ନାଟ୍ୟଶାସ୍ତ୍ର'ରେ ଯେଉଁଭଳି ନାଟକମାନଙ୍କର ବର୍ଣ୍ଣନା ରହିଛି । 'ପାଲି' ସେଭଳି ନାଟକ form ମାନଙ୍କ ମଧ୍ୟରୁ ଅନ୍ୟତମ । ତେଣୁ ଖ୍ରୀ: ପୂ: ୨ୟ ଶତକରୁ ପାଲିର ଆରମ୍ଭ ହୋଇଥିବା ଜଣାଯାଏ ।

ନାଟ୍ୟଶାସ୍ତ୍ର ରଚିତ ହେବା ସମୟରେ ଓଡ଼ିଶାରେ ବିଭିନ୍ନ ଦେବାଦେବୀ ଉପାସନା ପ୍ରଚଳିତ ଥିଲି । ବିଭିନ୍ନ ଧର୍ମ ମଧ୍ୟରେ ପାରସ୍ପରିକ ଦ୍ୱନ୍ଦ୍ୱ ଥିଲି । ତେଣୁ ଗଣେଶ, ଭାସ୍କର, ବିଷ୍ଣୁ, ଶିବ ଦୁର୍ଗାଙ୍କୁ ଏକତ୍ର କରି ପଞ୍ଚ ଦେବତାର ଉପାସନା ମାଧ୍ୟମରେ ଦ୍ରଷ୍ଟା ପୁରୁଷ-ଗଣ ଧାର୍ମିକ ଉଦାରତା ମାଧ୍ୟମରେ ସମାଜକୁ ଅବିଭକ୍ତ ରଖିବାର ଉଦ୍ୟମ କରିଥିଲେ । ତେଣୁ କୁହାଯାଏ—

"ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା
ଭିନ୍ନାଭିନ୍ନ ନ କର୍ତ୍ତବ୍ୟଂ ପଞ୍ଚଦେବ ନମୋସ୍ତୁତେ ।"

ଏହି ପଞ୍ଚ ଦେବତାଙ୍କୁ ସତ୍ୟନାରାୟଣ ରୂପରେ ପରିକଳ୍ପନା କରାଗଲି । ପ୍ରାୟ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀ ବେଳକୁ ସଂସ୍କୃତ ଭାଷାରେ ପାଲି ମାଧ୍ୟମରେ ଏଭଳି ଉପାସନା ପ୍ରଚଳିତ ହୋଇଥିଲି । ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାବରେ ବିକଶିତ ହେବାପରେ ୧୦ମରୁ ୧୪ଶ ଶତାବ୍ଦୀ ମଧ୍ୟରେ ଛାନ୍ଦ, ଚଉପଦୀ, ଚଉତିଶା, ବ୍ରତକଥା, କାନ୍ଦଣା, ଟିଗ ଟମାଳି ପ୍ରଭୃତିର ବିକାଶ ହୋଇଥିଲି । ୧୫ଶ ଶତାବ୍ଦୀରେ ସାରଳା ମହାଭାରତ ଓଡ଼ିଆ ସାହିତ୍ୟକୁ ଏକ ଗୌରବମୟ ପରମ୍ପରା ପ୍ରଦାନ କଲା । ୧୬ଶ ଶତାବ୍ଦୀରେ ଜଗନ୍ନାଥ ଦାସଙ୍କର ଭାଗବତ , ଅଚ୍ୟୁତା ନନ୍ଦଙ୍କ ହରିବଂଶ ଓ ବଳରାମଙ୍କର ଜଗମୋହନ ରାମାୟଣ ଭଳି ବିଶିଷ୍ଟ ପୁରାଣ ସାହିତ୍ୟ ସୃଷ୍ଟି ହେଲା । ଜଗନ୍ନାଥ ଦାସ, ଶ୍ରୀ ସତ୍ୟ-ନାରାୟଣ ଭାଗବତ ପାଲି ଲେଖିଥିବାର ଆଲୋଚକମାନେ କହନ୍ତି । ୧୭ଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ଶାସନ ତାନ୍ତ୍ରିକ ଏକତା ରହିପାରିଲି ନାହିଁ । ତେଣୁ ଧର୍ମୀୟ ଏକତାହିଁ ସାମାଜିକ ଏକତାକୁ ଧରି ରଖିପାରିବ, ଏଭଳି ପାଲିରୁ 'ପାଲି' କ୍ରମେ ଲୋକପ୍ରିୟ ହେଲା । ଏହି ପାଲି ଏକ ଧାରରେ ଦୃଶ୍ୟ ଓ ଶ୍ରାବ୍ୟ କାବ୍ୟ । ବୈଠକୀ ପାଲିରେ ଗାୟନମୁଖ୍ୟ ଓ ଠିଆପାଲି ମୁଖ୍ୟତଃ ଅଭିନୟ ପ୍ରଧାନ । ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଭାତୃଭାବ ସୃଷ୍ଟି କରିବା ଏଗୁଡ଼ିକର ପ୍ରଧାନ ଉଦ୍ଦେଶ୍ୟ । ବର୍ଷର ନିର୍ଦ୍ଦିଷ୍ଟ ପର୍ବପର୍ବାଣୀ ଯଥା—ଗଣେଶପୂଜା, ସରସ୍ୱତୀପୂଜା, କାର୍ତ୍ତିକପୂର୍ଣ୍ଣିମୀ, ବିବାହବ୍ରତ ନାମ-କରଣ ଆଦି ଶୁଭ ସାମାଜିକ ଅନୁଷ୍ଠାନ ବା ମାନସିକ ପୂରଣ ନିମିତ୍ତ ଏହା ଅଭିନୀତ ହୋଇଥାଏ । ଯେଉଁଠି ଏକାଧିକ ପାଲିକାର କ୍ରମାନ୍ୱୟରେ ପାଲି ପରିବେଷଣ କରନ୍ତି ତାହାକୁ ବାଦୀପାଲି କୁହାଯାଏ । ପାଣ୍ଡିତ୍ୟ ପ୍ରଦର୍ଶନ କରି ଶିକ୍ଷିତ ସମାଜର ସମାଦର ଲାଭ ଏହି ବାଦୀପାଲିର ଉଦ୍ଦେଶ୍ୟ ।

କେତେକଙ୍କ ମତରେ 'ପାଲ୍ୟତେ' ସଂସ୍କୃତ ଶବ୍ଦରୁ ଅପଭ୍ରଂଶରେ ପାଲି ଶବ୍ଦ ନିଷ୍ପନ୍ନ ହୋଇଅଛି । ଅନ୍ୟ ମତରେ ସଂସ୍କୃତ 'ପର୍ଯ୍ୟାୟ' ଶବ୍ଦରୁ 'ପାଲି' ଶବ୍ଦ ସୃଷ୍ଟି । ଏହା

ପ୍ରତିଯୋଗିତା ଢ଼ଙ୍ଗରେ ପର୍ଯ୍ୟାୟକ୍ରମେ ପରିବେଷିତ ହୋଇଥାଏ । ପଞ୍ଚ ଦେବତାଙ୍କର ଏକତ୍ର ଆରାଧନା ହେତୁ ଏହି ସାହିତ୍ୟିକ ବିଭାଗର ନାମ 'ପାଲା' ହୋଇଥିବା ସମ୍ଭବ ବୋଲି କେତେକ ଆଲୋଚକ କହନ୍ତି ।

ନାଟକ ଭଳି ଏହା ଏକ ପ୍ରକାର ଦୃଶ୍ୟକାବ୍ୟ । ଏଥିରେ ପ୍ରସ୍ତାବନା ଅଂଶକୁ 'ମଙ୍ଗଳାଚରଣ' ବୋଲି କୁହାଯାଏ । ନାଟକର ପଞ୍ଚ ସନ୍ଧି ଓ ପଞ୍ଚ ଅବସ୍ଥା ଭଳି ଏଥିରେ ଆରମ୍ଭ, ପ୍ରଯତ୍ନ, ପ୍ରତ୍ୟାଶା, ନିୟତାପ୍ତି ଓ ଫଳାଗମ ରହିଥାଏ । ଏଥିରେ ନାଟକୀୟ ରୀତିରେ ଦ୍ୱନ୍ଦ୍ୱର ଉପସ୍ଥାପନା କରାଯାଇଥାଏ । ମୁଖ୍ୟତଃ ଶୃଙ୍ଗାର, ହାସ୍ୟ, କରୁଣ, ବୀର ଓ ଶାନ୍ତରସ ଏଥିରେ ଦେଖାଯାଏ । କରୁଣ, ବୀର ଓ ହାସ୍ୟରସର ଅବତାରଣାରେ ପାଲାର ବୈଶିଷ୍ଟ୍ୟ ରହିଛି । ମାତ୍ର ରସ ଅନେକ ସମୟରେ ଭକ୍ତିର ପର୍ଯ୍ୟାୟଭୁକ୍ତ ହୋଇ-ଥାଏ । ୧୭ଶ ଶତାବ୍ଦୀ ବେଳକୁ ଏହି ଦୃଶ୍ୟକାବ୍ୟ ସମଗ୍ର ଓଡ଼ିଶାରେ ତଥା ସାଧାରଣ ଜନତାର ଆଦର ଲାଭକରି ସାରିଥିଲା । ଜଗନ୍ନାଥ ଓ ସତ୍ୟପୀର ଏକ ଓ ଅଭିନ୍ନ ଭାବରେ ଆରାଧିତ ହେଉଥିଲେ । ଧାର୍ମିକ ଉଦାରତା ଏହାର ମୁଖ୍ୟ ପ୍ରବୃତ୍ତି । ଗାମ୍ଭୀର୍ଯ୍ୟ ସହିତ ସୌନ୍ଦର୍ଯ୍ୟ ଏହାର ବୈଶିଷ୍ଟ୍ୟ ।

ଏହା 'ଏକକ ଅଭିନୟ' ଯୁକ୍ତ ସାମାଜିକ ଅନୁଷ୍ଠାନ । ବିଭିନ୍ନ ଚରିତ୍ରମାନଙ୍କୁ ସର୍ବାଙ୍ଗ ସୁନ୍ଦର କରି ପରିବେଷଣ କରିବା ପାଇଁ ଗାୟକ ପାଲିଆମାନଙ୍କର ସାହାଯ୍ୟ ନେଇଥାଏ । ଆବଶ୍ୟକ ପଡ଼ିଲେ ରାଜା ଭୂମିକାରେ ଅଭିନୟ କରୁଥିବା ଗାୟକ ଦୂତ ଭୂମିକାରେ ତତ୍‌କ୍ଷଣାତ୍ ଅବତୀର୍ଣ୍ଣ ହୋଇଥାଏ । ଅଭିନୟ ସହିତ ସଙ୍ଗୀତ ଗାନ ପରି-ବେଶକୁ ଭାବମୟ କରିଥାଏ । ଏଥିରେ ପୁରାଣ ସାହିତ୍ୟ, ଇତିହାସ କିମ୍ବଦନ୍ତୀ, ରାଜନୀତି ସମାଜତତ୍ତ୍ୱ ସହିତ ଆଦର୍ଶବାଦ ସମନ୍ୱିତ ହୋଇଥାଏ । ଏହି ଆଦର୍ଶବାଦ ମଧ୍ୟରେ 'ସାମାଜିକନ୍ୟାୟ' ଉପସ୍ଥାପିତ ହୁଏ, ଯାହା କି ସାଧାରଣ ଦର୍ଶକ ପାଇଁ ଜୀବନର ମାର୍ଗ ଦର୍ଶକ ସିଦ୍ଧ ହୋଇଥାଏ ।

ବଳରାମ ଦାସଙ୍କର ଲକ୍ଷ୍ମୀ ପୁରାଣ, ଯଶୋବନ୍ତ ଦାସଙ୍କର ଗୋବିନ୍ଦଚନ୍ଦ୍ର ଓ ଦାଢ଼ୀଆ ଭକ୍ତର ଅନେକ କାହାଣୀ ପାଲା ମାଧ୍ୟମରେ ପରିବେଷିତ ହୋଇ ଲୋକପ୍ରିୟତା ହାସଲ କରିଛି । ପରବର୍ତ୍ତୀ ସମୟରେ ଉପେନ୍ଦ୍ରଭଞ୍ଜଙ୍କର ବୈଦେହୀଶ ବିଳାସ, ସୁଭଦ୍ରା ହରଣ ରାଧାନାଥଙ୍କର ପ୍ରାୟ ପ୍ରତ୍ୟେକ ରଚନା, ଗଙ୍ଗାଧରଙ୍କର ଇନ୍ଦୁମତୀ, କୀଚକବଧ ତପସ୍ୱିନୀ ପ୍ରଭୃତି ପାଲା ମାଧ୍ୟମରେ ପରିବେଶିତ ହୋଇଥିବା ଦେଖାଯାଏ । ପାଲା-କାରମାନେ ସର୍ବଦା ବହୁପାଠୀ । ସ୍ୱର ତାଳ ଲୟ ଭଙ୍ଗୀ ତଥା ଅଭ୍ୟାସ ବଳରେ ସେମାନେ ପ୍ରାଚୀନ ସାହିତ୍ୟ, ମଧ୍ୟକାଳୀନ ସାହିତ୍ୟ, ଆଧୁନିକ ସାହିତ୍ୟ ସହିତ ପ୍ରତିବେଶୀ ହିନ୍ଦୀ ଓ ବଙ୍ଗୀୟ ସାହିତ୍ୟକୁ ଏକୀଭୂତ କରି ପାଲାରେ ପ୍ରୟୋଗ କରି ଥାଆନ୍ତି ।

ଓଡ଼ିଶାରେ ଲୋକପ୍ରିୟ ହୋଇଥିବା ଅଧିକାଂଶ ପାଲାର ରଚୟିତା ହେଉଛନ୍ତି କବି କର୍ଣ୍ଣ । ସେ ମେଦିନୀପୁରର ବ୍ରାହ୍ମଣ ସନ୍ତାନ ବୋଲି ଡଃ କୁଞ୍ଜବିହାରୀ ଦାଶ ଅନୁମାନ କରନ୍ତି । ତାଙ୍କ ନାମରେ ଭଣିତ ହୋଇଥିବା ଷୋଳପାଲି ହେଉଛି—ଜନ୍ମପାଲା, ପଦ୍ମଲୋଚନ ପାଲା, ମର୍ଦ୍ଦଗାଜି ଜନ୍ମପାଲା, ମର୍ଦ୍ଦଗାଜି ବିଭାପାଲା, ବିଦ୍ୟାଧର ପାଲା, ମଦନ ସୁନ୍ଦର ପାଲା, ସଦାନନ୍ଦ ସୌଦାଗର ପାଲା, ମନୋହର ଫାସ୍ୟାର ବା ରଙ୍ଗଲତା ପାଲା, ଶଙ୍କର ଗୁଡ଼ିଆ ପାଲା, ଦୁର୍ଜନ ସିଂହ ପାଲା, ହେରଗୃନ୍ଦ ପାଲା, କାଠୁ-ଶଯ୍ୟା ପାଲା, ଲକ୍ଷ୍ମଣ କୁମାର ପାଲା, ଅଭିନ୍ନ ମଦନ ପାଲା, ସ୍ୱର୍ଗାରୋହଣ ପାଲା ଓ ଶ୍ୱେତ ବସନ୍ତ ପାଲା । ଏହି ୧୬ଟି ପାଲା ବ୍ୟତୀତ ବଙ୍ଗୀୟ କବି ଭୃଗୁରାମ ଓ ଶଙ୍କରଙ୍କ ରଚିତ କେତୋଟି ପାଲା ମଧ୍ୟ ଓଡ଼ିଶାରେ ଲୋକପ୍ରିୟ । ଏତଦ୍‌ବ୍ୟତୀତ ସ୍ଥାନୀୟ କବିମାନଙ୍କର ସଙ୍ଗୀତ ଏକତ୍ର କରି କୌଣସି ପୌରାଣିକ କାହାଣୀର ଆଧାର ଉପରେ ପାଲା ମଧ୍ୟ ରଚିତ ହୋଇଅଛି । ଶ୍ରୀଯୁକ୍ତ ନିରଞ୍ଜନ ପଣ୍ଡାଙ୍କ ତଥ୍ୟ ଅନୁସାରେ ଓଡ଼ିଶାରେ ପ୍ରଚଳିତ ଲୋକପ୍ରିୟ ପାଲାମାନଙ୍କ ବ୍ୟତୀତ ଆହୁରି ୧୦୮ଟି ପାଲା ରାଜ୍ୟ ସରକାରଙ୍କ ସଂଗ୍ରହାଳୟରେ ରହିଅଛି । ଏସବୁର ପାଠୋଦ୍ଧାର କରାଯିବା ଏକ ଜାତୀୟ କର୍ତ୍ତବ୍ୟ । କବି, ନାଟ୍ୟକାର ଜଗନ୍ନାଥପାଣି ଅନେକ ପାଲା ରଚନା କରିଥିଲେ । ସେଗୁଡ଼ିକର ସମାଜ ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ଆଲୋଚନା କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ଜଗନ୍ନାଥ ପାଣିଙ୍କର ସମୟ ହେଉଛି (୧୮୩୬ରୁ ୧୮୯୬) ଅର୍ଥାତ ଉନବିଂଶ ଶତାବ୍ଦୀର ଶେଷପାଦ । ଯଦିଚ ଏ ସମୟକୁ ଆଧୁନିକ ଓଡ଼ିଆ ନାଟକ 'ବାବାଜୀ ରଚିତ ହୋଇସାରିଲାଣି, ତଥାପି ସାଧାରଣ ଜନଜୀବନରେ ସେହି ଯାତ୍ରା ପାଲା ବା ଅନ୍ୟାନ୍ୟ ପାରମ୍ପରିକ ନାଟ୍ୟ ରୂପର ପ୍ରଭାବ ଯଥେଷ୍ଟ ଥାଏ ପ୍ରତିଘାତରେ ଓଡ଼ିଶା ଜନଜୀବନ ଏହି ପାରମ୍ପରିକ ନାଟକ ମଧ୍ୟରୁହିଁ ବଞ୍ଚିବାର ରସଦ ସଂଗ୍ରହ କରି ଭବିଷ୍ୟତ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲା ବୋଲି କୁହାଯାଇପାରେ । ଭଦ୍ରକର ନଲାଙ୍ଗ ନିବାସୀ ଜଗନ୍ନାଥ ପାଣିଙ୍କ ନିକଟରେ ନବ ଜାଗରଣର ବାର୍ତ୍ତା ହୁଏତ ସିଧା ସଳଖ ପହଞ୍ଚି ପାରିନଥିଲା କାରଣ ନିଜର ସୀମିତ ବିଦ୍ୟାବୁଦ୍ଧି ତଥା ପାରମ୍ପରିକ ମନୋରଞ୍ଜନ ମାର୍ଗକୁ ଆପଣାର କରି ସେ ଯାତ୍ରା ରଚନାରେହିଁ ବ୍ରତୀ ହୋଇଥିଲେ । ତାଙ୍କର ଏକ ଭ୍ରାମ୍ୟମାଣ ଯାତ୍ରାଦଳଥିଲା ଓ ସେ ରାମାୟଣ ମହାଭାରତର ଲୋକପ୍ରିୟ କାହାଣୀ ଗୁଡ଼ିକୁ ନାଟ୍ୟରୂପ ଦେଇ ଅଗମ୍ୟ ଗ୍ରାମା-ଞ୍ଚଳରେ ବାରମ୍ବାର ଅଭିନୟ କରାଉଥିଲେ । ତାଙ୍କର ସେହି କୃତି ଗୁଡ଼ିକୁ ଆମେ ଗୀତ ନାଟ୍ୟ, କାବ୍ୟ-ନାଟ୍ୟ ବା ନାଟ୍ୟକାବ୍ୟ ବୋଲି କହିପାରିବା କାରଣ ସଂଳାପ ବନ୍ଧନ ଏହି କୃତି ଗୁଡ଼ିକରେ ଲୀଳା, ସୁଆଙ୍ଗ ପ୍ରଭୃତିର ସଙ୍ଗୀତାତ୍ମକତା ସହିତ ମଞ୍ଚ ନାଟକର ଦୃଶ୍ୟମାନତା ଏକୀଭୂତ ହୋଇଯାଇଥିଲା । ଏଗୁଡ଼ିକ ହେଉଛି ଉଷାବତୀ ହରଣ, ହାରବତୀ ହରଣ, ପାରିଜାତ ହରଣ, ମାନଭଞ୍ଜନ, ରୁକ୍ମିଣୀ ପରିଣୟ, ଧ୍ରୁବ ଚରିତ, ପ୍ରହ୍ଲାଦ ଚରିତ ପ୍ରଭୃତି । ଏତଦ୍‌ବ୍ୟତୀତ ସେ ପ୍ରେମତରଙ୍ଗିଣୀ, ବ୍ରଜମନୋହର

ପ୍ରମୋଦଚନ୍ଦ୍ରମଣି ଭଳି କାବ୍ୟ ରଚନା କରିଛନ୍ତି । ଦ୍ରୌପଦୀ ଭୂଷଣ, ଦ୍ରୌପଦୀ ରତ୍ନାବଳୀ ବିଭିନ୍ନ ଜଣାଣ, ମହାଭାରତ, ରାମାୟଣ, ଜଗମୋହନ ଗୁଣ୍ଡିଚା ବିଜେ ଭଳି ରଚନା କରି ନିଜର ଭକ୍ତିପ୍ରାଣତା ତଥା ସଂସ୍କୃତ ସଚେତନତାର ପ୍ରମାଣ ଦେଇଛନ୍ତି । ଏତଦ୍ ବ୍ୟତୀତ ସେ ପାଞ୍ଚୋଟି ପାଲା ରଚନା କରିଥିବାର ଜଣାଯାଏ । ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟ ଆନୁକୁଲ୍ୟରେ ପ୍ରକାଶିତ ଜଗନ୍ନାଥ ପାଣି ଗ୍ରନ୍ଥାବଳୀ ୨ୟ ଭାଗରେ ତାଙ୍କର ଗୋଟିଏ ପାଲା 'କାମ କାଠୁରିଆପାଲା' ସନ୍ନିବେଶିତ । ୩ୟ ଭାଗରେ ଶ୍ୱେତ ବସନ୍ତ ପାଲା, ଢ଼ଗଡାରି ପାଲା, ବିଦ୍ୟାଧର ପାଲା ଓ ମନୋହର ଫାଶିଆରି ପାଲା ସ୍ଥାନିତ ହୋଇଛି । ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରାପ୍ତ ଏହି ୫ଟି ପାଲାରେ ଅନେକ ଗୀତର ଶେଷରେ ଭଣିତାରେ ପଦ୍ମନାଭି, ରସାନନ୍ଦ ନବଘନ ବୃନ୍ଦ, ବିନାୟକ ସିଂହ ମାନଧାତା, ଦୀନକୃଷ୍ଣ ଓ ସାଲବେଗଙ୍କ ନାମର ଭଣିତା ରହିଛି । କିନ୍ତୁ ବିଶେଷ ଭାବରେ 'ଭଣେ ଜଗନ୍ନାଥ ବିପ୍ର' ବୋଲି ଭଣିତା ଥିବାର ଦେଖାଯାଏ । (ଏ ସମ୍ପର୍କରେ ଭାଷାତତ୍ତ୍ୱ ଦୃଷ୍ଟିରୁ ଅଧିକ ଗବେଷଣା ଆବଶ୍ୟକ) ସାଧାରଣ ପାଲା ରଚନା କରିବା ପଛରେ କେତେକ ପ୍ରେରକ ଚିନ୍ତ ଆମ ଦୃଷ୍ଟିକୁ ଆସିଥାଏ । ଯଥା—

୧—ପାଲା ଲେଖିବା ଓ ଗାନ କରିବା ତତ୍କାଳୀନ ପରମ୍ପରା ଥିଲା ।

୨—ଧର୍ମୀୟ ଏକତା ପ୍ରତିଷ୍ଠା ପାଇଁ ପାଲା ଥିଲା ଏକ ବଳିଷ୍ଠ ମାଧ୍ୟମ ।

୩—ରସିକ ଗ୍ରାହକ ସହିତ ସାଧାରଣ ଶ୍ରୋତା ଏହାର ଗ୍ରାହକ ଥିଲେ ।

୪—ବିଭିନ୍ନ ଉଦାହରଣ ମାଧ୍ୟମରେ ମିତ୍ରସମ୍ମିତ ଓ କାନ୍ତା ସମ୍ମିତ ଉପଦେଶ ପ୍ରଦାନରେ ଏହାଥିଲା ସଫଳ ।

୫—ପୁରାଣ କାହାଣୀ ସହିତ କେତେକ ଚମତ୍କାର କାଳ୍ପନିକ କାହାଣୀକୁ ନେଇ ପାଲା ରଚିତ ହେଉଥିଲା ।

୬—ପାଲାରେ ସମାଜ ଚିନ୍ତ ପ୍ରଦାନର ବ୍ୟାପକ ପରିସର ରହିଥିଲା ।

୭—ମୂଲ୍ୟବୋଧ ଭିତ୍ତିକ ଜୀବନ ଯାପନ ପାଇଁ ସାଧାରଣ ଜନତା ପାଲାରୁ ପ୍ରେରଣା ପାଉଥିଲେ ଓ ତ୍ରୁଟି ସଂଶୋଧନ ପାଇଁ ପ୍ରୟାସ କରୁଥିଲେ ।

୮—କଥିତ ଭାଷାର କଳାତ୍ମକରୂପ ସଙ୍ଗୀତ ମାଧ୍ୟମରେ ପରିବେଶିତ ହୋଇ ଲୋକପ୍ରିୟ ହୋଇଥିଲା ।

୯—କର୍ମ ଓ ଭାଗ୍ୟର ପାରସ୍ପରିକ ଦ୍ୱନ୍ଦ୍ୱ ଓ ଈଶ୍ୱର ବିଶ୍ୱାସ ବିଜୟ ଏଥିରେ ଉଦ୍‌ଘୋଷିତ ହେଉଥିଲା ।

୧୦—ମନୁଷ୍ୟର କର୍ମଫଳ ଉପରେ ଏକ ବୃହତ୍ତର ଶକ୍ତିର ହସ୍ତକ୍ଷେପ ସର୍ବଦା ଦେଖିବାକୁ ମିଳୁଥିଲା । ଲୋକ କବି ଜଗନ୍ନାଥ ପାଣିଙ୍କର ଏହି ପାଞ୍ଚୋଟି ପାଲା ମଧ୍ୟରୁ

ବିଦ୍ୟାଧର ପାଲା, କାମ କାଠୁରିଆ ପାଲା, ଜଗତାରୀ ପାଲାରେ ମୁଖ୍ୟ କାହାଣୀ ଆରମ୍ଭ ହେବା ପୂର୍ବରୁ ଏକ ଏକ ପ୍ରାରମ୍ଭିକ କଥାଭାଗ ସଂଯୁକ୍ତ ହୋଇଛି । ଯଥା ଜଗତାରୀ ପାଲାରେ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ଦାରୁବ୍ରହ୍ମ ପ୍ରତିଷ୍ଠା କଥା ପ୍ରଥମେ କୁହା-ଯାଇ ସେ ରାଜ୍ୟରେ ରାଜା ପରୀକ୍ଷିତ, ରାଣୀ ଚନ୍ଦ୍ରାବତୀ । ପରୀକ୍ଷିତର ପୁତ୍ର ଜନ୍ମେଜୟଙ୍କ ରାଜତ୍ୱ କାଳରେ ସେ ରାଜ୍ୟରେ ବିଦ୍ୟାଜିତ ନାମକ ସାଧବର କଥା ଆରମ୍ଭ ହୋଇଛି । ତାର ପତ୍ନୀ ଚନ୍ଦ୍ରାବତୀ ଓ ସେମାନେ ସନ୍ତାନହୀନ ବୋଲି କୁହା-ଯାଇଛି । କଥା କହିବାର ପ୍ରବଣତା ଓ କଥାମଧ୍ୟରେ ଏନ୍ୟ ଏକ ନୂଆ କଥା କହିବାର ଆଗ୍ରହ ଏଥିରେ ଦେଖିବାକୁ ମିଳେ । ଜଗତାରୀ ପାଲାରେ ଅପୁତ୍ରିକ ସାଧବ ବିଦ୍ୟାଜିତ ବନରେ ପଶୁପକ୍ଷୀ ମାନଙ୍କର ସନ୍ତାନ ସ୍ନେହଦେଖି ଚିନ୍ତାକରନ୍ତି—

"ମାନବ ହୋଇଣ ମୋର ପୁତ୍ର ପୌତ୍ର ନାହିଁ
ପାପୀ ବୋଲି ବ୍ୟାଘ୍ର ସର୍ପ ନଛୁଇଁଲେ କେହି"

(କ-ପା ଗ୍ରନ୍ଥାବଳୀ-ତୃତୀୟଖଣ୍ଡ ପୃ-୫୭)

ଏହା ପାରମ୍ପରିକ ପୁତ୍ରାକାଙ୍‌କ୍ଷାର ପ୍ରତିଫଳନ ମାତ୍ର ।

ଧର୍ମ ସମନ୍ୱୟର ଉଦାର ଭାବନା :—

ସାଧାରଣତଃ ରାଜାରାଣୀ ବା ମହାଜନ ମହାଜନ ପତ୍ନୀ ଅପୁତ୍ରିକ ଦୋଷରୁ ମୁକ୍ତ ଲାଭ କରିବାକୁ ସତ୍ୟନାରାୟଣ ଦେବଙ୍କୁ ମାନସିକ କରିଛନ୍ତି । ସତ୍ୟନାରାୟଣ ସର୍ବଦା ବୃଦ୍ଧ ବ୍ରାହ୍ମଣ ବେଶରେ ଆସି ଭକ୍ତଙ୍କୁ ପରୀକ୍ଷା କରୁଛନ୍ତି ବା କିଛି ଆଶ୍ଚର୍ଯ୍ୟଜନକ ନିର୍ଦ୍ଦେଶ ଦେଉଛନ୍ତି । ତାଙ୍କର ଘର ହୋଇଛି ମକ୍କା ବା ମଦନାଦ୍ୱାରବତୀ, ତାଙ୍କ ପାଇଁ ପୁରାଣ ଓ କୋରାନ ସମାନ । ରାମ ଓ ରହିମ ଏକାକାର, ଶ୍ୱେତ ବସନ୍ତ ପାଲାର ପ୍ରାରମ୍ଭରେ "ବନ୍ଦଇ ଶ୍ରୀ ମକ୍କାନଗ୍ର ପ୍ରଭୁ ଜନ୍ମ ସ୍ଥାନ" ବୋଲି ବନ୍ଦନା ଆରମ୍ଭ କରାଯାଇଛି । ପୁଣି ସେହି ଶ୍ୱେତ ବସନ୍ତ ପାଲାରେ ରାଜାଙ୍କ କନ୍ୟା ଶଚୀ ଦେବୀ ଅବିବାହିତା ଅବସ୍ଥାରେ ପ୍ରଭୁ ସତ୍ୟନାରାୟଣଙ୍କୁ ଜନ୍ମ ଦେଇଛନ୍ତି ।

"ସତ୍ୟନାରାୟଣ ପୂଜା କର ନଗ୍ର ନର
ଯବନ ପୂଜିବେ ଇଷ୍ଟ ଅଟନ୍ତି ତାଙ୍କର"

(କ ପା ଗ୍ରନ୍ଥାବଳୀ ତୃତୀୟ ଖଣ୍ଡ-ପୃ ୨)

ସତ୍ୟନାରାୟଣ କର୍ଣ୍ଣ ବାଟେ ଜନ୍ମ ହେବାର ଯେଉଁ ବର୍ଣ୍ଣନା ରହିଛି ତାହା ମହାଭାରତର କର୍ଣ୍ଣ ଜନ୍ମ ସହିତ ସାଦୃଶ୍ୟ ରକ୍ଷା କରିଛି । ପ୍ରଭୁ ଯୀଶୁ ମଧ୍ୟ ସେହିପରି କୁମାରୀ ମେରୀ ମେରୀଙ୍କ ଗର୍ଭରୁ ଜନ୍ମ ଲାଭ କରି ଈଶ୍ୱର ପୁତ୍ର ଭାବରେ ବିଖ୍ୟାତ ହୋଇଥିଲେ । ଏହି ପ୍ରକାର ବିବରଣୀ ପ୍ରଦାନ କରିବା ଅନ୍ତରାଳରେ ଧର୍ମ ସମନ୍ୱୟର ଭାବନା ହିଁ ବଳବତୀ

'ବିଦ୍ୟାଧର ପାଲ'ରେ ନୀଳଗିରିର ବୌଦ୍ଧ ମୂର୍ତ୍ତିର ବର୍ଣ୍ଣନା ଅତ୍ୟନ୍ତ ମନୋରମ । ଏହି ନୀଳଗିରି ଓଡ଼ିଶାରେ ଅବସ୍ଥିତ ।

ପୁରୁଷୋତ୍ତମେ କଳିକରାଜ ମନ୍ଦିରେ ଅଛନ୍ତି ଚତୁର୍ଭୁଜ
ଯେଉଁ ଯେବେ ବ୍ରହ୍ମହତ୍ୟା ପାପ ହରେ କପାଳ ମୋଚନ ସାକ୍ଷୀ ହେଳ
ହେ ସାଧୁଜନେ, ବୈକୁଣ୍ଠ ଯିବାକୁ ଯେବେ ଅଛି ମନେ
ଭଜ ନୀଳଗିରି ନାଥ ଶ୍ରୀଚରଣେ, ଯାଙ୍କୁ ଧ୍ୟାୟିଣ ନପାନ୍ତି ସିଦ୍ଧଗଣେ
(ଜଗନ୍ନାଥ ପାଣି ଗ୍ରନ୍ଥାବଳୀ ୩ୟ ଖଣ୍ଡ-ପୃ ୮୯)

ତାଙ୍କ ଶେଷରେ ବିଭିନ୍ନ ପୁରାତନ କବିଙ୍କ ଭଣିତା ଗୁଡ଼ିକୁ ଛାଡ଼ି ଅନ୍ୟ ସମସ୍ତ ଭଣିତାରେ ସେ ନିଜକୁ ଶ୍ରୀ ଦାରୁବ୍ରହ୍ମ ପରିକର ବା 'ବ୍ରହ୍ମ ପରିକର ଜଗନ୍ନାଥ' ବୋଲି ଲେଖିଛନ୍ତି ।

ଏହି ପାଲ ଗୁଡ଼ିକରେ ବିଶିଷ୍ଟ ଦେବତା ହେଉଛନ୍ତି ସତ୍ୟପୀର ବା ସତ୍ୟନାରାୟଣ ଯେ କ୍ଷଣେ ରୁଷ୍ଟ ତ କ୍ଷଣେ ତୁଷ୍ଟ ଦେବତା । କେତେବେଳେ ସେ ଶିରଣି ନ ପାଇ କ୍ରୋଧରେ ନାସାରୁ ସର୍ପ ଜାତ କରାଇ ପାରନ୍ତି ତ କେତେବେଳେ ଭକ୍ତର ଶୃଙ୍ଖଳିକ ତ୍ରୁଟିକୁ ମଧ୍ୟ କ୍ଷମା କରିଦିଅନ୍ତି । ଶ୍ୱେତ ବସନ୍ତ ପାଲରେ ମହାଜନ ବସନ୍ତକୁ ସମୁଦ୍ରକୁ ପେଲି ଦେବା ସମୟରେ ସତ୍ୟନାରାୟଣ ତା ନିକଟକୁ ଜୀବନ ରକ୍ଷାକାରୀ କାଠପଟା ପଠାଇଛନ୍ତି । 'ବିଦ୍ୟାଧର ପାଲ'ରେ ଅପୁତ୍ରିକ ରାଜା ନୃସିଂହ ସେନଙ୍କୁ ବୃଦ୍ଧ ବେଶ ଧାରଣ କରି ବନମଧ୍ୟରେ ବାଳକ ପ୍ରଦାନ କରିଛନ୍ତି । ରାଜା ସେହି ବାଳକକୁ ପୁତ୍ର ଭଳି ପାଳନ କରିଛନ୍ତି । ଉତ୍ତରୀରେ ନାରାୟଣଙ୍କ ପ୍ରସାଦ ପୋଖରୀ କୂଳରେ ଭୁଲିଯାଇଥିବାରୁ ସେ ତାର ସ୍ୱାମୀଙ୍କୁ ସର୍ପ ପଠାଇ ଦଂଶନ କରାଇଛନ୍ତି । ବିଦ୍ୟାଧର କେବଳ ଈଶ୍ୱର ଚକ୍ରାକର ବିପଦରୁ ମୁକ୍ତି ପାଇ ନାହିଁ । ମାଲୁଣୀ ସାହାଯ୍ୟରେ ରାଜକୁମାରୀ ଲୀଳାବତୀ ସହିତ ଗୁପ୍ତ ପ୍ରଣୟରେ ଲିପ୍ତ ହେବାରୁ ରାଜା ତାକୁ ମୃତ୍ୟୁଦଣ୍ଡ ଦେଇଛନ୍ତି । ଏହି ସମୟରେ ମଧ୍ୟ ବିଦ୍ୟାଧର ଧର୍ମ, ନାରାୟଣ, ପିତା, ମାତା ଓ ଗୁରୁଙ୍କୁ ଜଳ ଅଂଜୁଳି ପ୍ରଦାନ କରି ନିଜର ଭକ୍ତି ନିବେଦନ କରିଛି । ତେଣୁ କେବଳ ଧର୍ମରେ ନୁହେଁ କର୍ମରେ ମଧ୍ୟ ସମନ୍ୱୟର ଭାବନା ଲୋକକବି ଜଗନ୍ନାଥ ପାଣିଙ୍କର ରହିଥିଲା ଏହା ନିର୍ବିବାଦରେ କୁହାଯାଇ ପାରେ ।

## ଚମତ୍କାରିତା ସୃଷ୍ଟିର କୌଶଳ :—

କାହାଣୀରେ ଚମତ୍କାରିତା ସୃଷ୍ଟି କରି ଶ୍ରୋତା ତଥା ଦର୍ଶକମାନଙ୍କ ଉତ୍କଣ୍ଠାକୁ ଶେଷ ପର୍ଯ୍ୟନ୍ତ ଅବ୍ୟାହତ ରଖିବା ପାଲକାରମାନଙ୍କର ବୈଶିଷ୍ଟ୍ୟ । ଗାୟକ ଜଣେ ମାତ୍ର ହେଲେ ମଧ୍ୟ ବିଭିନ୍ନ ଶୈଳୀରେ ସଙ୍ଗୀତ ଗାନ କରି ବିଭିନ୍ନ ରସ ସୃଷ୍ଟି କରିବାର କ୍ଷମତା ରଖନ୍ତି । ଜଗନ୍ନାଥ ପାଣିଙ୍କର ପାଞ୍ଚୋଟି ପାଲରେ ଈଶ୍ୱରକୃତ ଚମତ୍କା-

ରିତା ସହିତ ବିଭିନ୍ନ ମନ୍ତ୍ର ଯନ୍ତ୍ରର ଚମତ୍କାରିତା ଦେଖାଯାଏ । କାମ କାଠୁରିଆ ପାଲାରେ ରାଜପୁତ୍ର ଶଶିକାନ୍ତ ଇନ୍ଦ୍ରଜାଲମୟ ବନରେ ପ୍ରବେଶ କରି ରୁଧିରପୂର୍ଣ୍ଣ ସରୋବର, ଯାଧ ଦାଣ୍ଡିରେ ବାନର, ବିଚିତ୍ର ସ୍ଫଟିକ ପୁର ଅବଲୋକନ କରି ଭୟ ପାଇଛି କିନ୍ତୁ ନାରାୟଣ ଙ୍କୁ ସ୍ମରଣ କରି ସେ ସକଳ ଦୁର୍ଦ୍ଦଶାରୁ ମୁକ୍ତି ପାଇଛି । ଶ୍ୱେତ ବସନ୍ତ ପାଲାରେ ପାଇଛି ରାଜକନ୍ୟା ଶଚୀ ଦେବୀ ପୁଷ୍କରିଣୀର ପଦ୍ମ ଫୁଲ ଶୁଂଘି ଗର୍ଭବତୀ ହେବା ଓ କର୍ଣ୍ଣ ଦ୍ୱାରରେ ପୁତ୍ର ଜନ୍ମ କରିବାର ବର୍ଣ୍ଣନା ମଧ୍ୟ ଚମତ୍କାରିତାର ଅନ୍ୟ ଏକ ଦୃଷ୍ଟାନ୍ତ । ରନ୍ଧନ ସାମଗ୍ରୀ ପାଇଁ ହାଟକୁ ଗଲା ବେଳେ ସୁନା କଳସ ଧରି ବୁଲୁଥିବା ହାତୀ ତା ମୁଣ୍ଡରେ କଳସ ଢ଼ାଳିଛି । ୧୦୦ ରାଣୀ ଧରି ରାଜା ହୋଇଥିବା ଶ୍ୱେତ ନିଜ ଭାଇକୁ ପାଶୋରି ଯାଇଛି । କାହାଣୀର ଗତି ଭିନ୍ନ ମୁଖୀ କରିବା ପାଇଁ ରାଜାହୀନ ରାଜ୍ୟର ହାତୀ କେହି ଏକ ଅନାମଧେୟ ମସ୍ତକରେ ସୁନା କଳସ ଢାଳିବାର ବର୍ଣ୍ଣନା ଲୋକ-କଥାରେ ବାରମ୍ବାର ପ୍ରୟୋଗ କରାଯାଏ । ପୁଣି ବସନ୍ତ ହାତ ଲାଗିଲେ ପଥର ରତ୍ନ ହୋଇଯିବ ବୋଲି ଫକୀର ରୂପୀ ପ୍ରଭୁ ତାକୁ ଆଶୀର୍ବାଦ ଦେବା, ଫଳରେ ସୁନାରେ ରୂପାରେ ବାଡ ଢିଆରି କରି ରାଜାଙ୍କର ଅଦ୍ଭୁତ ଇଚ୍ଛା ପୂରଣରେ କ୍ଷମ ହୋଇ ବସନ୍ତ କନ୍ୟା ଲାଭ କରିବା ମଧ୍ଯ ବିଚିତ୍ର ମନେ ହୁଏ । ବିଦ୍ୟାଧର ପାଲାର ନାୟକ ବିଦ୍ୟାଧର ନଳଠାରୁ ଶିଖିଥିବା ମନ୍ତ୍ର ଘୋଡା କାନରେ କହି ଘୋଡ଼ାକୁ ଶୂନ୍ୟରେ ଉଡାଇବା କଥା ବର୍ଣ୍ଣିତ ଯଦିଚ 'ନଳ' କିଏ ସେ ଚରିତ୍ର ସମ୍ପର୍କରେ କୌଣସି ପୂର୍ବାପର ସୂଚନା ନାହିଁ । ମନୋହର ଫାସିଆରୀ ପାଲାରେ ପୁରୁଷ ପିପାସୀ ରୂପୀ ରଙ୍ଗଲତା ଭୟଙ୍କର ଦୁର୍ଦ୍ଧର୍ଷ ଗୟାଳକୁ ଏକାକୀ ମାରିବାରେ ସକ୍ଷମ ହୋଇଛି । ବାପା ଭାଇଙ୍କ ପ୍ରରୋଚନାରେ ମନୁଷ୍ୟ ମାରଣ ମନ୍ତ୍ର ଶିଖିଥିବା ରଙ୍ଗଲତା ବାରମ୍ବାର ନରହତ୍ୟା କରିଛି । ମୀନ କେତନକୁ ଦେଖି ସେ ତାକୁ ବିବାହ କରିବା ଆଶାରେ ବଧ ନକରି ସାଙ୍ଗରେ ଧରି ପଳାଇ ଯାଇଛି । ମାରଣା ପିତା ପୁତ୍ର ଦ୍ୱୟ ମନ୍ତ୍ର ଧୂଳି ଗୁଣ୍ଡରେ ବୋଳି ଶୀଘ୍ର ଯାଇ ରଙ୍ଗଲତା ଓ ମୀନ କେତନଙ୍କୁ ଧରିଛନ୍ତି । ପିତା ପୁତ୍ର ଉଭୟ କନ୍ୟାକୁ ଝିଙ୍ଗାସ କରି-ଛନ୍ତି । ସେମାନଙ୍କ ସହିତ ଯୁଦ୍ଧ କରି ରଙ୍ଗଲତା କ୍ରୋଧରେ ହାତ ଝାଡ଼ିଛି । ତହିଁରୁ ଛୁରୀ ଓ ତୀକ୍ଷ୍ଣ ଶର ବାହାରି ପିତାର ମୁଣ୍ଡକୁ ଗଣ୍ଡିରୁ ଅଲଗା କରି ଦେଇଛି । ନିଜର ଭାଇ ଗୋବିନ୍ଦ ଓ ଅଚ୍ୟୁତଙ୍କୁ ରଙ୍ଗଲତା ସେହିଭଳି ବର ଝାଡ଼ି ବଧ କରିଛି । ମାଲୁଣୀ ମୀନକେତନକୁ ମେଣ୍ଢା କରି ରଖିଦେବା ମଧ୍ଯ ଚମତ୍କାରିତାର ଅନ୍ୟ ଏକ ନିଦର୍ଶନ । ତାଙ୍କର ନାୟକମାନେ ନାରୀବେଶ ଧାରଣ କରିବା ଓ ନାୟିକା ମାନେ ପୁରୁଷ ବେଶ ଧାରଣ କରି ଅସାଧ୍ୟ ସାଧନ କରିବା ମଧ୍ଯ ପରିଦୃଷ୍ଟ ହୁଏ ।

## ଅଘଟଣ ଘଟଣ ପଟିୟସୀ ମାଲୁଣୀ :—

ଲୋକକଥାରେ ଭେଣ୍ଡାକୁ ମେଣ୍ଢା କରି ପାରୁଥିବା ମାଲୁଣୀ ଭକ୍ତ ସାହିତ୍ୟର ରସିକ ଟଙ୍କା ଫଳ ପରି ଖୋସା ଖୋସିଥିବା ନାୟିକାରେ ପରିଣତ ହୋଇଛି ।

ମଥୁରାର ମାଲୁଣୀ ଅଭିସାରିକା କୁବ୍‌ଜା ଚରଣ୍ଡୀନ ପ୍ରତୀକ୍ଷାର ଭିନ୍ନ ନାମରେ ରୂପାନ୍ତରିତ ହୋଇ ଯାଇଛି । ଜଗନ୍ନାଥ ପାଣିଙ୍କ ପାଲା ଗୁଡ଼ିକରେ ଏହି ମାଲୁଣୀର ଚରିତ୍ର ଚମତ୍କାର ଭାବରେ ଚିତ୍ରିତ କରାଯାଇଛି । ନିଜର କୌଳିକ ବୃତ୍ତି ଦ୍ୱାରା ରାଜପରିବାର ସହିତ ସମ୍ପୃକ୍ତ ଏହି ରସିକା ନାରୀ ଅନେକ ନିଷିଦ୍ଧ ପ୍ରେମ କାହାଣୀର ସୃଷ୍ଟି କାରିଣୀ ।

ଶ୍ୱେତ ବସନ୍ତ ପାଲାରେ ଘୋଡ଼ା ଚୋର ବୋଲି ବନ୍ଦୀ ହୋଇଥିବା ବସନ୍ତ ପଥର ଛୁଇଁ ସୁନା କରି ନିଜର ସହବନ୍ଦୀ ମହାଜନ କରିଜ ଶୁଝନ୍ତି । ମହାଜନ ନିକଟରେ ରହି ତାଙ୍କୁ ଯଥେଷ୍ଟ ଧନ ସମ୍ପଦ ପ୍ରଦାନ କରନ୍ତି । କିନ୍ତୁ ବୋଇତରେ ମହାଜନ ବାଣିଜ୍ୟ କରିବାକୁ ଗଲାବେଳେ ବସନ୍ତଙ୍କୁ ସମୁଦ୍ରକୁ ଠେଲି ଦେଇଛି । କାଠପଟା ଆଶ୍ରୟ କରି ବସନ୍ତ ଯେଉଁଠି କୂଳରେ ଲାଗିଛି ସେ ଅଞ୍ଚଳରେ ବହୁତ ଫୁଲ ଫୁଟିଛି । ଫଳରେ ମାଲୁଣୀ ତାଙ୍କୁ ଠାବ କରି ଘରକୁ ନେଇଛି । ବସନ୍ତ ରାଜକୁମାରୀର ଫୁଲ ଗୁନ୍ଥି ସେଥି ସହିତ ଚିଟାଉ ଲେଖିଛି । ମାଲ୍ୟାଣୀ କୌଶଳରେ ବସନ୍ତଙ୍କୁ ନିଜର ମାମୁଁ ଝିଅ ଭଉଣୀବୋଲି ରାଣୀଙ୍କ ମନରେ ବିଶ୍ୱାସ ଜନ୍ମାଇ ତା ପାଇଁ ରାଣୀଙ୍କ ନିକଟରୁ ଶାଢ଼ୀ ଓ ଅଳଙ୍କାର ନେଇଛି । ନାରୀ ବେଶ ହୋଇ ବସନ୍ତ ଆଠଦିନ ରାଜକନ୍ୟା ଲୀଳାବତୀ ସହିତ ବିତାଇଛି ବିଦ୍ୟାଧର ମଧ୍ୟ ମାଲୁଣୀ ଘରେ ରହି ଅନୁରୂପ ଭାବରେ ଫୁଲ ଗୁନ୍ଥି, କୌଶଳରେ ନାରୀ ବେଶ ଧାରଣ କରି ବାରମ୍ବାର ତାରାବତୀ ସହିତ ମିଳିତ ହେବାର ସୁଯୋଗ ପାଇଛି । ମନୋହର ଫାସିଆରା ପାଲାରେ ମାଲୁଣୀର ବର୍ଣ୍ଣନା ଭିନ୍ନ ପ୍ରକାର । ଉପରୋକ୍ତ ମାଲୁଣୀ ଦ୍ୱୟ ଅପତ୍ୟ ସ୍ନେହରେ ନାୟକମାନଙ୍କ ଉଦ୍ଦେଶ୍ୟ ସିଦ୍ଧିର ମାର୍ଗ ସୁଗମ କରି-ଥିଲେ । କିନ୍ତୁ ଏ ମାଲୁଣୀ ନିଜର କାମନା ଚରିତାର୍ଥ କରିବାକୁ ମୀନ କେତନଙ୍କୁ ମନ୍ତ୍ରରେ ମେଣ୍ଢା କରି ରଖିଥିଲା । ଝାଡ଼େଶ୍ୱରୀଙ୍କ ଯାତ୍ରା ଦେଖିବାକୁ ମୀନକେତନ ଇଚ୍ଛା କରିବାରୁ ସେ ତାଙ୍କୁ ନାରୀ ବେଶ କରାଇ ଦେବୀଙ୍କ ନିକଟକୁ ନେଇଥିଲା । ରଙ୍ଗଲତା ଏସବୁ କଥା ଜାଣିପାରି ପତିଙ୍କ ମୁକ୍ତି ଦେବା ଆଶାରେ କଳା ମେଣ୍ଢାଟିଏ ଦେବୀଙ୍କ ନିକଟରେ ମାନସିକ କରିଛି । ମାଲୁଣୀ ପ୍ରଥମେ ମେଣ୍ଢା ଦେବାକୁ ରାଜି ହୋଇ ନାହିଁ । କିନ୍ତୁ ରଙ୍ଗଲତା ମାଲୁଣୀକୁ ଭୟଭୀତ କରାଇ ନିଜ ପତିଙ୍କୁ ପାଇ ପାରିଛି । ନାରୀ ଯଦି ଭୋଗ ସର୍ବସ୍ୱ ହୁଏ ତେବେ ସେ ସ୍ୱାର୍ଥ ପାଇଁ ସବୁ କିଛି ଅଘଟଣ ଘଟାଇ ପାରେ କିନ୍ତୁ ପିତୃ ଦେବତା ଓ ସ୍ୱାମୀଙ୍କୁ ଭକ୍ତି କରୁଥିବା ନାରୀର ତପସ୍ୟାରେ ଈଶ୍ୱର ସନ୍ତୁଷ୍ଟ ହୋଇ ତାର ମନୋବାଞ୍ଛା ପୂରଣ କରି ଥାଆନ୍ତି ।

## ସମାଜ ଜୀବନର ପ୍ରତିଫଳନ :—

ସାହିତ୍ୟରେ ସମାଜ ଜୀବନର ପ୍ରତିଫଳନ ସ୍ୱାଭାବିକ ଭାବରେ ଘଟିଥାଏ । ଜଗନ୍ନାଥ ପାଣିଙ୍କ ପାଲା ଗୁଡ଼ିକରେ ତତ୍‌କାଳୀନ ଓଡ଼ିଶାର ସମାଜ ଜୀବନ ନିଜର ସକଳ ବର୍ଣ୍ଣ ବିଭା ନେଇ ପ୍ରତିଫଳିତ ହୋଇଛି । ସତ୍ୟନାରାୟଣ ପୂଜା ବିଧିର୍ ବାରମ୍ବାର

ବର୍ଣ୍ଣନା ଏଥିରେ ଦେଖାଯାଏ । ପୂଜା ପାଣ୍ଡୁ ଝଂଟୁଲି ଓ କଠାଉ ରଖିବ । ଉପରେ ଚନ୍ଦ୍ରୁଆ ଟାଣିବ । ପଞ୍ଚ ଦେବତାଙ୍କ ନାମରେ ପାନ ଓ ଗୁଆ ରଖିବ । କ୍ଷୀର, ଗୋଟ କଦଳୀ ଓ ଘିଅ ମିଶାଇ ନୂତନ ପାତ୍ରରେ ଶିରଣି କରିବ । ସନ୍ଧ୍ୟାରେ ପୂଜା କରି ସମସ୍ତଙ୍କୁ ପ୍ରଭୁଙ୍କ ପ୍ରସାଦ ଶିରଣି ବାଣ୍ଟି ଦେବ । ଦରିଦ୍ର ବ୍ରାହ୍ମଣ ଭୋଜନ ପାତ୍ର ବିକି କରି ସତ୍ୟ ପୀର ପୂଜା କରି ଅତୁ ଐଶ୍ୱର୍ଯ୍ୟର ଅଧିକାରୀ ହୋଇଛନ୍ତି ।

ଶ୍ୱେତ ବସନ୍ତ ପାଲରେ ବିବାହର ବର୍ଣ୍ଣନା ଦେଖିବା । ଏଥିରେ ଅଦ୍ୱ୍ୟ କାମିନୀ କନ୍ୟା ମଂଗୁଳାଇବା, ଲବଣ ଚଉଁରୀ, ଅଳତା ସିନ୍ଦୂର, ହାତଗଣ୍ଠି, ପଞ୍ଚୁ ଗ୍ରାସୀ ପ୍ରଭୃତିର ବର୍ଣ୍ଣନା କରାଯାଇଛି । ବିଦ୍ୟାଧର ପାଲରେ ଜ୍ୟୋତିଷ ଡାକି ରାଶି ନକ୍ଷତ୍ର ଗଣାଇବା, ଚିଟାଉ ଲେଖା, ବେଦୀ ତିଆରି, ଚତୁଷ୍କାର ଡକାଇ ଚତୁର୍ଙ୍କନ, ବର କନ୍ୟାଙ୍କର ବେଶ ପ୍ରଭୃତିର ବର୍ଣ୍ଣନା ଦିଆଯାଇଛି । ଅପୁତ୍ରିକ ରାଜା ବା ସାଧବମାନଙ୍କ ଘରେ ପିଲାମାନଙ୍କର ଗର୍ଭବାସ ସମୟରେ ମନ ସାଧ ଖାଇବାର ବର୍ଣ୍ଣନା ବେଶ୍ ଆମୋଦ ଦାୟକ । ମନୋହର ଫାସିଆରୀ ପାଲରେ ଜମ୍ମେଶ୍ୱରଙ୍କ ରାଣୀ ଜମ୍ବୁବତୀ ଯେଉଁ ଖାଦ୍ୟ ଦ୍ରବ୍ୟର ବିବାଦ କରିଛନ୍ତି , ସେଗୁଡ଼ିକ ହେଉଛି ଛିରୀ, ଏଣ୍ଡୁରି, ସରପୁଲି ଆରିସା, ବରା, ମାଣ୍ଡୁଆ, ମନୋହର, ପୁରୀ, କାକରା, ରସକେଲି, ଅମାଲୁ, ସାଚପଣା କନ୍ଦ ସାକର, ମୋଡ଼ି ଚୂର, ଡାଲିମ୍ବ, ବୁନ୍ଦିଆ, ଝେଞ୍ଚେଡ଼ି, ତାଡ଼ିଆ, ଜଗନ୍ନାଥ ବଲ୍ଲଭ, ଦଧି ପଖାଳ, ଅନ୍ନକଡ଼ି, ଖଣ୍ଡ ଖଜା, ପାଚିଲା କଦଳୀ, ପଣସ, ବାସପଇଡ଼, ଧୂଆଁମୁଖ ମୂଷି କାକୁଡ଼ି, ସପୁରି, ପେଣ୍ଠି ଖଳୁରୀ, କାଞ୍ଜି; ମାଛ ବେସର, କଳମ୍ବ ଶାଗ, ପୋଇ-ଶାଗ, ପଞ୍ଚୁବର୍ଣ୍ଣି ଶାଗ ଖରଡା, କଅଁଳ ଆମ୍ବୁଲ ପକା ହରଡ ଡାଲି ଖାଇବାକୁ ମନ କରିଛନ୍ତି ।

ଉଗ୍ରତାରାର ବିବାହ ସମୟରେ ସୁବର୍ଣ୍ଣ ପିଢ଼ାରେ ତାକୁ ବସାଇ ହଳଦୀ ଲଗାଇ ଦେବା, ଚୂଆ ଅତର ଲଗାଇ ଗଜଦନ୍ତ ପାନିଆଁରେ ମୁଣ୍ଡ କୁଣ୍ଡାଇ ଦେବା । ଜୁଡ଼ା ବାନ୍ଧି ଫୁଲ ଲଗାଇ ଦେବା, ମଥାରେ ଚନ୍ଦ୍ର ଝୁମ୍ପା ଓ ଅଳକା, କଣ୍ଠରେ ଝିରଝିରା, ମଞ୍ଚୀ କଇ ଦାନ ଫୁଲ, କଣ୍ଠରେ ଚମ୍ପ ଦାଣ ଓ ହଂସମାଳ, ନାକରେ ନାସାମଣି, ଗୁଣା ନୋଥ ଓ ଦଣ୍ଡୀ, ହାତରେ ରତ୍ନ ଚୂଡ଼ୀ ଓ କଲିଅଣ୍ଠି, ବାହୁରେ ତାଜ ଓ ବାଜୁବନ୍ଧ, ପାଦର ଆଙ୍ଗୁଠିରେ ଝୁଣ୍ଟିଆ, କପାଳରେ ଅର୍ଦ୍ଧେନ୍ଦୁ ଭଳି ଚନ୍ଦନ ପାଟି ପ୍ରଭୃତିର ବର୍ଣ୍ଣନା ଦେଖାଯାଏ । ବରର ବେଶ ବର୍ଣ୍ଣନା ମଧ୍ୟ ଆମ ସମାଜର ବିବାହ କାଳୀନ ବେଶର ଅନୁରୂପ । ଉଗ୍ରତାରାର ଜନ୍ମ ସମୟରେ ନାହିକଟା, ସ୍ନାନ କରାଇବା, ଏଣ୍ଡୁଅ ଜଳାଇବା, ବିପ୍ରମାନଙ୍କୁ ଦାନ କରିବା, ପଞ୍ଚୁଆତ ଓ ଷଷ୍ଠୀ ପୂଜାର ବର୍ଣ୍ଣନା ଦେଖା-ଯାଇଛି । ସନ୍ତାନ ଜନ୍ମ ସମୟରେ ଷଷ୍ଠୀ ପୂଜା ଦିନ ନବଜାତକ ମୁଣ୍ଡ ଉପରେ ଲେଖଣୀ ତାଳ ପତ୍ର ରଖି ଭାଗ୍ୟ ଫଳ ଲେଖା ହୋଇ ପରିକଳ୍ପନା କରାଯାଇଛି । ଉଗ୍ରତାରା

ସ୍ୱାମୀର ମୃତ ପିଣ୍ଡକୁ କୋଳରେ ଧରି ସତୀ ହେବାର କଳ୍ପନା କରିଛି କିନ୍ତୁ ପ୍ରଭୁଙ୍କ ଇଚ୍ଛାରୁ କୁମାର ଜୀବନ ଲାଭ କରିଛି । ପ୍ରଭୁ ସତ୍ୟନାରାୟଣ ଏଥିରେ ଜାଙ୍ଗଳିକ ବା ମାପୁଆ କେଳାର ବେଶ ଧାରଣ କରିଛନ୍ତି । ଶ୍ୱେତ ବସନ୍ତ ପାଲାରେ କଣ୍ଟୁଆଳ ଶ୍ୱେତ ଓ ବସନ୍ତଙ୍କୁ ହତ୍ୟା କରିବାକୁ ନେଲାବେଳେ ସେମାନେ ତାଙ୍କୁ ପ୍ରାଣ ବିକଳରେ ଧର୍ମ-ଭାଇ ସମ୍ବୋଧନ କରିବାରୁ ସେ ତାଙ୍କୁ ଛାଡ଼ି ଦେଇଛି ଓ ଠେକୁଆଁଟିଏ ମାରି, ତାର ରକ୍ତ ଦେଖାଇ ରାଜାରାଣୀଙ୍କୁ ସନ୍ତୁଷ୍ଟ କରିଛି । ବସନ୍ତ ସହିତ ଗୋପନରେ ମିଳିତ ହେଉଥିବା ରାଜକୁମାରୀ ଲୀଳାବତୀ ତାର ବିବାହ ସମ୍ପର୍କରେ ପିତାମାତାଙ୍କୁ ସୂଚନା ଦେବାକୁ ମାଲୁଣୀକୁ ଅନୁରୋଧ କରିଛି । ମନୋହର ଫାସିଅଣ୍ଟା ପାଲାର ରଙ୍ଗଲତା ଆଉ କେତେ ପାଦ ଆଗକୁ ଯାଇ ବାପା ଭାଇଙ୍କ ଅଜାଣତରେ ମୀନକେତନ ସହିତ ଘର ଛାଡ଼ିଛି । ବାପା ଭାଇ ତାକୁ କ୍ରୋଧରେ ଅଜ୍ଞାନ ହୋଇ କଟୁକ୍ତି କହିଛନ୍ତି, କିନ୍ତୁ ରଙ୍ଗଲତା ଭୟ ନ କରି କହେ—

ଶୁଣି ରଙ୍ଗଲତା ବୋଲଇ ପିତା ନାହିଁ କି ଲଜ୍ଜା
ବିଭା ନ କଲୁ ତୋହ ଜନ୍ମ ହୋଇଲୁ ଦୁଷ୍ଟ ରାଜା
ମନୁଷ୍ୟ ମରିଇ ମୋହସ୍ତେ ଅନ୍ୟେ କି ଜନ୍ମ ହେବ
ରବି ନନ୍ଦନ ସୁତ ହସ୍ତେ ପରାଭବ ପାଇବ ।

(ଜଗନ୍ନାଥ ପାଣି ଗ୍ରନ୍ଥାବଳୀ-୩ୟ ଖଣ୍ଡ ପୃ-୧୪୫)

ବିବାହ ଯୋଗ୍ୟ କନ୍ୟା ପିତାଙ୍କ ସମ୍ମୁଖରେ ତାଙ୍କର ତ୍ରୁଟି ନିର୍ଦ୍ଦେଶ କରିବା ତତ୍କାଳୀନ ସମାଜରେ ଅତ୍ୟାଧୁନିକ ଚିନ୍ତାର ପରିଚାୟକ । ବାରମ୍ବାର ନରହତ୍ୟା କରୁଥିବା ମନ୍ତ୍ରପ୍ରବୀଣା ରଙ୍ଗଲତା ମୀନକେତନର ଦର୍ଶନ ପରେ ନିଜର ଅପକର୍ମ ପାଇଁ ଅନୁତାପ କରିବା ମଧ୍ୟ ମାନବୀୟ । ତତ୍କାଳୀନ ସମାଜରେ ଗୋପନ ପ୍ରଣୟର ଘଟଣା ମଧ୍ୟ ସ୍ୱାଭାବିକ ଭାବରେ ରହିଥିଲା । ବିବାହ ଯୋଗ୍ୟ କନ୍ୟା ନିଜ ପାଇଁ ପତି ନିର୍ବାଚନ କରୁଥିଲା । ପିତାମାତାଙ୍କର ସମ୍ମତି ନ ପାଇଲେ ମଧ୍ୟ ସେ ରଙ୍ଗଲତା ଭଳି ଏକାକିନୀ ପରିବେଶର ସମ୍ମୁଖୀନ ହେଉଥିଲା । ଈଶ୍ୱରଙ୍କ ଇଚ୍ଛାର ପୃଷ୍ଠ ନେଇ ଅସାମାଜିକତାକୁ ସାମାଜିକତାରେ ପରିଣତ କରାଯାଉଥିଲା । ଶ୍ୱେତ ବସନ୍ତ ପାଲାର ବସନ୍ତକୁ ଓ ବିଦ୍ୟା-ଧର ପାଲାର ବିଦ୍ୟାଧରକୁ ଈଶ୍ୱର ଆଶୀର୍ବାଦ ହିଁ ଗୁପ୍ତ ପ୍ରେମ ଜନିତ ତ୍ରୁଟିରୁ ରକ୍ଷା କରିଛି । ଶ୍ୱେତ ଓ ବସନ୍ତଙ୍କର ସାବତ ମାଆ ପଦ୍ମାବତୀ ସପତ୍ନୀ ପୁତ୍ରଦ୍ୱୟଙ୍କୁ ମାରିବା ପାଇଁ ଚକ୍ରାନ୍ତ କରିଛନ୍ତି । ତେଣୁ ସେ କୌଶଳରେ ମନ୍ଦୀ ଘରେ ବଢୁଥିବା ପୁଅ ଦୁହିଁଙ୍କୁ ଖାଇବାକୁ ଡାକିଛନ୍ତି । ତାଙ୍କ ଆଡକୁ ଖାଇବା ଥାଳି ଫିଙ୍ଗି ଦେଇ ସେ ରାଜକୁମାର ଦ୍ୱୟଙ୍କ ବିଷୟରେ ରାଜାଙ୍କ ନିକଟରେ ମିଥ୍ୟା ଅଭିଯୋଗ କରିଛନ୍ତି—

× × ଭୃମ୍ନ ବେକ ସୁତ
ଓଟାର ଧରଣ ଗୋପଣକୁ
ଯ୍ୟାକୁ ନ ମାଇଲେ ମରବ ନିଶ୍ଚ
ଶୁଣି ନୃପ କଲେ ସନମତ-
(ଜଗନ୍ନାଥ ପାଣି ଗ୍ରନ୍ଥାବଳୀ-୭ମ୍ୟ ଖଣ୍ଡ ପୃ-୬)

କିଶୋର ସନ୍ତାନଦ୍ୱୟ ମାତୃ ସମ ସାବତ ମାର ପଣତ କାନି ଓଟାର ଧରିବା କେତେ ନ୍ୟୁନ ସଗତ ଓ ଏଭଳି ଆଚରଣ ପାଇଁ ପ୍ରାଣଦଣ୍ଡ ଦେବାକୁ ରାଜା ସମ୍ମତ ହେବା ସ୍ୱାଭାବିକ ନୁହେଁ । କିନ୍ତୁ ବିମାତାଙ୍କ ଯନ୍ତ୍ରଣା ଆମ ସମାଜରେ ବହୁ ପରିଚିତ ଘଟଣା ଓ ଦ୍ୱିତୀୟ ପତ୍ନୀ ଗ୍ରହଣ କରିଥିବା ପୁରୁଷ ଯେତେ ବ୍ୟକ୍ତିତ୍ୱ ସମ୍ପନ୍ନ ହେଲେ ମଧ୍ୟ ଏଭଳି ଅଚରଣର ପ୍ରତିବାଦ ନ କରିବା ଆମ ସମାଜରେ ଯଥେଷ୍ଟ ପରିଦୃଷ୍ଟ ହୋଇଥାଏ । କିନ୍ତୁ ପୁରବାସୀ ସାଧାରଣ ଜଣେ ମଧ୍ୟ ରାଜାଙ୍କର ଏହି ଅମାନୁଷିକ ଆଚରଣକୁ ନିନ୍ଦା କରିଛନ୍ତି । କାମ କାଠୁରିଆ ପାଲାରେ ଶଶିକାନ୍ତଙ୍କୁ ଗଣକ ଚେତାଇ ଦିଅନ୍ତି ଯେ ହୁଏତ ସେ କୌଣସି ଦେବ ଦେବୀଙ୍କ ନିକଟରେ କରିଥିବା ମାନସିକ ପୂରଣ ହୋଇ ନାହିଁ ତେଣୁ ସେ ନିଜର ପିତାମାତାଙ୍କୁ ପାଶୋର ଦେଇଛନ୍ତି । ଶକୁନ ଶାସ୍ତ୍ର ସମ୍ପର୍କରେ ପ୍ରଚଳିତ ଧାରଣା ମଧ୍ୟ ଏ ଗୁଡ଼ିକରେ ଦେଖିବାକୁ ମିଳେ । ଅଶୁଭ ସଙ୍କେତର ସୂଚନାରେ ବାମ ଚକ୍ଷୁ ଘାରି ହେବା ଓ ଦଧି ମାଛ ତଥା ପୂର୍ଣ୍ଣ କୁମ୍ଭ ଶୁଭ ସଙ୍କେତର ବାହକ ଭାବରେ ସମ୍ମାନ ପାଇବା ଆମ ସମାଜରେ ପ୍ରଚଳିତ ।

## ଆତ୍ମ ପରିଚୟ :—

କବି ଜଗନ୍ନାଥ ପାଣି ନିଜକୁ ବାରମ୍ବାର ଶ୍ରୀ ଦାରୁବ୍ରହ୍ମ ପରିକର ବୋଲି ଭଣିତାରେ ଲେଖିଛନ୍ତି । କିନ୍ତୁ ଗ୍ରନ୍ଥାବଳୀ ୨ୟ ଖଣ୍ଡରେ ସ୍ଥାନିତ କାମ କାଠୁରିଆ ପାଲାରେ ସେ ଆତ୍ମ ପରିଚୟ ପ୍ରଦାନ କରିଛନ୍ତି-ପାଲା ଶେଷରେ—

ନୀଳାଙ୍ଗ ନିଳୟ ମିର କୁଳ କଳାକାର
ପ୍ରବନ୍ଧ ରଚିଲେ ଜଗନ୍ନାଥ କବିବର
ସାରଦା ପ୍ରସନ୍ନ ଫଳେ ସୁମରିଲା ବୁଦ୍ଧି
ହରିଚଳି ନାରାୟଣ ମହିମା ଜଳଧି
(ଜଗନ୍ନାଥ ପାଣି ଗ୍ରନ୍ଥାବଳୀ-୨ୟ ଖଣ୍ଡ ପୃ ୩୪୮)

ଫଳରେ ପାଣି ମହାଶୟଙ୍କ ରଚନାବଳୀର ମୂଲ୍ୟାୟନ କହିତ ସମ୍ଭବ ହୋଇ ପାରୁଛି । ଭାଷା ଦୃଷ୍ଟିରୁ ଏହି ସମସ୍ତ ପାଲାର ମୂଲ୍ୟାୟନ ସର୍ବାଦୌ ଆବଶ୍ୟକ ମନେହୁଏ ।

## ଭାଷା ପ୍ରୟୋଗରେ ଅନନ୍ୟତା :—

ପାଲାର ଭାଷା ସାଧାରଣତଃ ବଙ୍ଗଳା ହିନ୍ଦୀ ଓ ଓଡ଼ିଆ ମିଶ୍ରିତ ଏକ ଲଳିତ ସଙ୍ଗୀତମୟ ଭାଷା । ଏହା ଯେତିକି ଭାବ ପ୍ରଧାନ ସେତିକି ଆବୃତ୍ତି ପ୍ରଧାନ । ବଙ୍ଗଳା ମିଶ୍ରିତ ଭାଷାର ଉଦାହରଣ ଗୁଡ଼ିକ ହେଉଛି ବର୍ଣ୍ଣିତେ, ସକଲ, ହୁଲା ହୁଲ, ଶୁନ୍ୟାଁ ଦୟାଁ, ଶ୍ରିନ, ବୁଝିତେ, ଅତବୋଲ, କହି ଦନ ପ୍ରଭୃତି । ପାଲାରେ ପ୍ରଯୁକ୍ତ ଓଡ଼ିଆ ଭାଷାରେ କେତେକ ବର୍ତ୍ତମାନ ଅପ୍ରଚଳିତ ପ୍ରାଚୀନ ଶବ୍ଦ ଦୃଷ୍ଟିଗୋଚର ହୁଏ । ଯଥା ଅଇଶ୍ୱର୍ଯ୍ୟ, ଯୌବିଷ; ସ୍ଥାନ, ଗୁଡ଼ରସ, ତରୁ ସର୍ବା, ସାମର୍ତ୍ତୀ, ସ୍ୱୟମ୍ବର, ମନଖ୍ୟ, ଅଙ୍ଗୀତ, ଦ୍ରିଯୋଧନ, ଢ଼ଳାମ୍ବର ପୋୟେ, ଅପଙ୍ଗୀତ ପ୍ରଭୃତି । ଉଗ୍ରତାରା ପାଲରେ ବାରମ୍ବାର କୌଣସି ଗ୍ରନ୍ଥ ବା ପାଲର ଆରମ୍ଭରେ "ଯୋଜନ ଜାନେ ଶ୍ରୀରାମ ଗୁଣ ଗାବରେ" (ଜଗନ୍ନାଥ ପାଣି ଗ୍ରନ୍ଥାବଳୀ-୩ୟ ଖଣ୍ଡ-ପୃ ୫୭) ଭଳି ହିନ୍ଦୀ ମିଶ୍ରିତ ଭାଷାର ପ୍ରୟୋଗ ଦେଖାଯାଏ । ଏହା ବ୍ୟତୀତ ସ୍ୱାଭାବିକ ଭାବରେ କେତେ ସାତକାଳୀନ ଆଲଂକାରିକ ପ୍ରୟୋଗ ଏହି ପାଲ ଗୁଡ଼ିକରେ ଦେଖାଯାଏ । ଆବଶ୍ୟକ ସ୍ଥଳେ ପାଲା ମଧ୍ୟରେ ପାଳି ଓ ଚଉପଦୀ ସଂଯୁକ୍ତ ହୋଇଛି । ଏଥିରେ ସାଧାରଣତଃ ନାୟକ ନାୟିକାଙ୍କର ମାନସିକ ପରିବେଶ ଅନୁରୂପ ରାଧା କୃଷ୍ଣଙ୍କର ପ୍ରଣୟ କାହାଣୀ ସନ୍ନିବେଶିତ କରାଯାଇଛି । ଶ୍ୱେତ ବସନ୍ତ ପାଲାରେ—

ଯେଉଁ ଦୂର୍ବାଦଳ ଅଙ୍ଗେ ଧୂଳି ଲାଗି
ଥିଲେ ଦେହ ପରା ଝାଡ଼ି ଝାଡ଼ି
ସେ ତନୁକୁ ତାର ଲାଖ କରି ମାର
ମାରୁଛୁ ବରଛି କୋଡ଼ି କୋଡ଼ି

(ଜଗନ୍ନାଥ ପାଣି ଗ୍ରନ୍ଥାବଳୀ-୩ୟ ଖଣ୍ଡ-ପୃ ୧୯)

'ଉଗ୍ରତାରା ପାଲା'ରେ ଛେକାନୁପ୍ରାସର ଏକ ଉଦାହରଣ

ସହି ତୋ ସ୍ନେହ କହିଲେ କହି ନୁହଇଁ ସହିଲେ
କହିବ କେତେ କହିଲେ ଯହିଁ ଇଚ୍ଛା ତହିଁ ଥିଲେ
ଦଶୁଆଇ ଗୃରୁ ଭ୍ରୁରୁ ଭଙ୍ଗୀରେ

(ଜଗନ୍ନାଥ ପାଣି ଗ୍ରନ୍ଥାବଳୀ-୩ୟ ଖଣ୍ଡ-ପୃ ୮୩)

ଅନ୍ୟାନ ବସନ୍ତ ଘରକୁ ଫେରି ଗ୍ରହବତୀଙ୍କୁ ନ ଦେଖି ବିବ୍ରତ ହୋଇ ପଡ଼ିଛି । ତାର ବିକଳ ଅବସ୍ଥାର ବର୍ଣ୍ଣନା ହେଉଛି "ମେଣ୍ଢା ମୃଗ ବଣା ହେଲା ପ୍ରାୟେ" ବିକଳ ହେବା ଏଭଳି ଉପମା ସ୍ୱଭାବ ସୁଲଭ କିନ୍ତୁ କାବ୍ୟିକ । ଜଗନ୍ନାଥ ପାଣିଙ୍କର ସମଗ୍ର ପାଲା ମଧ୍ୟରେ ଏଭଳି ଉପମା ଦୁର୍ଲ୍ଲଭ ମନେହୁଏ ।

ସୀତକାଳୀନ କାବ୍ୟ ପରମ୍ପରା ଅନୁସାରେ ଏହି ପାଲାଗୁଡ଼ିକୁ ବିଭିନ୍ନ ଛାନ୍ଦରେ ବିଭକ୍ତ କରାଯାଇଛି । କୌଣସି କୌଣସି ସ୍ଥଳରେ ଦୀର୍ଘ ବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳେ । କାବ୍ୟ ଲକ୍ଷଣଯୁକ୍ତ ଏହି ଭଳି ବର୍ଣ୍ଣନା ଜଗନ୍ନାଥ ପାଣିଙ୍କୁ କବି କୋଟିକୁ ଉନ୍ନୀତ କରି ପାରିଛି । କବି ଜଗନ୍ନାଥ ପାଣି ଓଡ଼ିଆ ଜନଜୀବନକୁ ଠିକ୍ ଭାବରେ ଚହ୍ନି ଥିଲେ । ଓଡ଼ିଆ ଘରର ଦୁଃଖ ସୁଖକୁ କେବଳ ତଟସ୍ଥ ହୋଇ ଦେଖି ନଥିଲେ, ଅଙ୍ଗେ ଲିଭାଇଥିଲେ । ତେଣୁ ଏ ଧରଣର ରଚନା ଭିତରେ ସେ ସିଧା ସଳଖ ଲୋକଙ୍କ ପାଖରେ ପହଞ୍ଚି ପାରୁଥିଲେ । ଧର୍ମର ଜୟ ପାପର କ୍ଷୟ ପ୍ରଦର୍ଶନ କରି ଏହି ଗଣ ସାହିତ୍ୟ ଗଣ ଚିତ୍ତରେ ଦୀର୍ଘ ସ୍ଥାୟୀ ଆସନ ସୃଷ୍ଟି କରିବାରେ ସମର୍ଥ ହୋଇ ପାରିଛି ଓ ଆଲୋଚନା ସମାଲୋଚନାର ଅପେକ୍ଷା ନ କରି ଜଳରେ ତୈଳ ଭଳି ଅତୀତରୁ ପ୍ରସରି ଯାଇଛି ।



* ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱ ବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର

# ଜଗନ୍ନାଥ ପାଣିଙ୍କ ମାନଭଞ୍ଜନ : ଏକ ଦୃଷ୍ଟିପାତ

ଡଃ ଉପେନ୍ଦ୍ର ନାୟକ

ମାନଭଞ୍ଜନ ରାଧାକୃଷ୍ଣଙ୍କର ସୁକୋମଳ ପ୍ରେମ କାହାଣୀ ସମ୍ପୃକ୍ତ ଏକ ଚମତ୍କାର ଉପାଖ୍ୟାନ । ଜଗନ୍ନାଥ ପାଣିଙ୍କ ପୂର୍ବରୁ ଏହା ଜୟଦେବଙ୍କ 'ଗୀତ ଗୋବିନ୍ଦ' ଓ ଅଚ୍ୟୁତାନନ୍ଦ ଦାସଙ୍କ 'ହରି ବଂଶ'ରେ ଉତ୍ତମ ରୂପେ ବର୍ଣ୍ଣିତ । 'ଗୀତ ଗୋବିନ୍ଦ' ଓ 'ହରି-ବଂଶ' ଅନୁସରଣରେ ଜଗନ୍ନାଥ ପାଣିଙ୍କ କୃଷ୍ଣ ଭକ୍ତିପ୍ରେମ ମିଶ୍ରିତ ଗୀତାଭିନୟ 'ମାନଭଞ୍ଜନ' ରଚିତ ହୋଇଥିଲେହେଁ କବିଙ୍କ କଳ୍ପନା ବିଳାସ, ନାଟକୀୟ ଭାବାବେଗ ଓ ସର୍ବୋପରି କଥାବସ୍ତୁର ସ୍ୱାତନ୍ତ୍ର୍ୟ ତାଙ୍କ ସ୍ୱକୀୟ ମୌଳିକତାର ପରିଚୟ ପ୍ରଦାନ କରେ ।

ପୂର୍ବବର୍ତ୍ତୀ ସମୟରେ ବିଶେଷ କରି ଊନବିଂଶ ଶତାବ୍ଦୀରେ ଲୀଳା, ସୁଆଙ୍ଗ, ନୃତ୍ୟ ନାଟିକା ଆଦି ମାଧ୍ୟମରେ ପରିବେଷିତ ହେଉଥିବା ବିଭିନ୍ନ ପ୍ରକାର କୃଷ୍ଣ ଲୀଳା ମାନଙ୍କ ମଧ୍ୟରୁ ମାନଭଞ୍ଜନ ଅନ୍ୟତମ ।

**କଥାବସ୍ତୁ** :—ବସନ୍ତ ଋତୁର ରାଜତ୍ୱ ଆରମ୍ଭ ହୋଇଛି । କୋକିଳର କୁହୁତାନ ଭ୍ରମରର ମୃଦୁଗୁଞ୍ଜନ, ମନମତାଣିଆ ପୁଷ୍ପ ରାଜିର ସୁଗନ୍ଧ, ନିର୍ମଳ ଚନ୍ଦ୍ର ମଣ୍ଡଳର ଅପୂର୍ବ ଶୋଭା, ବ୍ରଜେଶ୍ୱରୀ ରାଧାଙ୍କ ମନରେ ଭାବାନ୍ତର ଆଣିଛି । ବସନ୍ତର ଏହି ଉନ୍ମାଦନା ଭିତରେ ବ୍ରଜେଶ୍ୱର ଶ୍ରୀକୃଷ୍ଣଙ୍କର ବଂଶୀ ସ୍ୱନ ଆହୁରି ଉତ୍ତଳା କରି ପକାଇଛି । ମୁରଲୀଧରଙ୍କ ବିରହରେ ବ୍ୟାକୁଳ ହୋଇ ଶ୍ରୀରାଧା ନିଜର ପ୍ରିୟ ସଖୀକୁ ନିଜର ବିରହ ଯନ୍ତ୍ରଣା ସମ୍ପର୍କରେ ସଚେତନ କରାଇ ଶ୍ରୀକୃଷ୍ଣଙ୍କ ନିକଟକୁ ଦୂତୀ ରୂପରେ ପଠାଇ ତାଙ୍କ ଦୁରବସ୍ଥା ବିଷୟ ଉପସ୍ଥାପିତ କରିବାକୁ ଅନୁରୋଧ କରି କହିଛନ୍ତି—

''ଦାରୁଣ ମଦନ ଘେନି ଫୁଲ ଧନୁ ଶରେଁ
ମରମକୁ ଲକ୍ଷ୍ୟ କରି ବିନ୍ଧେ ବାରବାର ।
ଗୋ ପ୍ରିୟ ସଖି !

ମାର ମାରଣ ତାରଣ ବାରେ କର ଯାହି ।
ଯାଅ ଯାଅ ଜବା ଧଣ୍ଡି ଯାଅ ଏହି କ୍ଷଣ
ବ୍ରଜରାଜ ସୁତ ଦେଇ ରଖ ମୋର ପ୍ରାଣ ।
ଗୋ ପ୍ରିୟ ସଖି ।
ଜଗନ୍ନାଥ ବୋଲେ ଆଉ ବଳାନ୍ତି କମ୍ପାଇ ।"

ରାଧାଙ୍କ ନିର୍ଦ୍ଦେଶରେ ଦୂତୀ ଯାଇ ଶ୍ରୀକୃଷ୍ଣଙ୍କ ନିକଟରେ ଉପସ୍ଥିତ ହୋଇଛି । ଶ୍ରୀକୃଷ୍ଣଙ୍କ ବିରହାନଳରେ ଦଗ୍ଧୀଭୂତ ହେଉଥିବାର ସମ୍ବାଦ ଦିଅନ୍ତେ ବଂଶୀ ବଲ୍ଲଭ ଶ୍ରୀକୃଷ୍ଣ ଅର୍ଦ୍ଧ ରାତ୍ରରେ ରାଧାଙ୍କ କେଳି କୁଞ୍ଜକୁ ଯାତ୍ରା କରିବେ ବୋଲି ପ୍ରତିଶ୍ରୁତି ଦେଇ-ଛନ୍ତି । ପ୍ରତିଶ୍ରୁତି ପାଇ ଦୂତୀ ଫେରି ଆସି ଶ୍ରୀରାଧାଙ୍କୁ ସେହି ମିଳନ ସମ୍ବାଦ ଜଣାଇଛନ୍ତି । ଏହି ସମ୍ବାଦରେ ରାଧା ଆନନ୍ଦିତ ହୋଇ ଶ୍ରୀକୃଷ୍ଣ ସହିତ ମିଳିତ ହେବାର ସ୍ୱପ୍ନରେ ଅଧୀର ହୋଇ ଉଠିଛନ୍ତି । ତାଙ୍କ ହୃଦୟରେ ଭରି ଯାଇଛି ଅପୂର୍ବ ଉତ୍ତେଜନା, ଅଙ୍ଗେ ଅଙ୍ଗେ ଖେଳି ଯାଇଛି ଅଭିନବ ଶିହରଣ ଏବଂ ସର୍ବୋପରି ସେ ଏକ ଅପୂର୍ବ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଛନ୍ତି । ତେଣୁ ସେ ରାତିରେ ବୃନ୍ଦାବନସ୍ଥିତ କେଳିକୁଞ୍ଜାଭିମୁଖେ ଯାତ୍ରା ଆରମ୍ଭ କରିବା ସମୟରେ ନିଜ ନଣନ୍ଦ କୁଟିଳାର ସମ୍ମୁଖୀନ ହୋଇଛନ୍ତି । କୁଟିଳା ଏହି ପରପ୍ରେକ୍ଷୀରେ କୃଷ୍ଣ ନିନ୍ଦା କରିବା ସଙ୍ଗେ ସଙ୍ଗେ ରାଧାଙ୍କୁ ନାନାଦି ଭର୍ତ୍ସନା କରିଛନ୍ତି । କୁଟିଳାର ଏ ପ୍ରକାର ଭର୍ତ୍ସନା ସହ୍ୟ କରି ନ ପାରି ରାଧା ମଧ୍ୟ କୁଟିଳାକୁ ନାନାଦି କଟୁ ବାକ୍ୟ ପ୍ରୟୋଗ କରିଛନ୍ତି ।

ତାହାପରେ ସମସ୍ତ କ୍ରମେ ରାଧା ନିଜର ପ୍ରିୟ ସଖୀ ବୃନ୍ଦାର ଆଶ୍ୱାସନାରେ ଶାନ୍ତ ହୋଇ ନାନାଦି ବେଶ ଭୂଷାରେ ମଣ୍ଡିତ ପୂର୍ବକ କେଳିକୁଞ୍ଜରେ ପଦାର୍ପଣ ହୋଇ ଶ୍ରୀକୃଷ୍ଣଙ୍କ ଅପେକ୍ଷାରେ ରହିଛନ୍ତି । ଏଣେ ପ୍ରେମିକ ରାସେଶ୍ୱର ଶ୍ରୀକୃଷ୍ଣ ଅର୍ଦ୍ଧ ରାତ୍ରରେ ରାଧା କେଳିକୁଞ୍ଜାଭିମୁଖେ ବାହାରି ଭ୍ରମ ବଶତଃ ଚନ୍ଦ୍ରାବଳୀ ନାମ୍ନୀ ଅନ୍ୟ ଏକ ଗୋପା ଙ୍ଗନା ପୁରରେ ପ୍ରବେଶ କରିଛନ୍ତି । ଚନ୍ଦ୍ରାବଳୀ ଶ୍ରୀକୃଷ୍ଣଙ୍କୁ ଦେଖି ରତ୍ନନିଧି ପାଇଲା ପରି ଅତ୍ୟନ୍ତ ଆଦର ଅଭ୍ୟର୍ଥନା ସହ ନିଜ ପ୍ରେମ ଫାଶରେ ବାନ୍ଧି ରଖି ପ୍ରୀତିଦାନ କରିବାକୁ ଆଶା ପୋଷଣ କରିଛନ୍ତି । ଚନ୍ଦ୍ରାବଳୀର ପ୍ରେମ ଫାଶରୁ ମୁକ୍ତି ପାଇ ପାରି ନାହାନ୍ତି ଶ୍ରୀକୃଷ୍ଣ । ରତି କ୍ରୀଡା ବିଳାସରେ ପ୍ରମତ୍ତ ରହି ରାତି ଯାପନ କଲା ପରେ ପ୍ରଭାତ ସମୟକୁ ସେ ରାଧାଙ୍କ ସ୍ମୃତିରେ ବିଚଳିତ ହୋଇ ରାଧାଙ୍କ ପାଖକୁ ଆସିଛନ୍ତି । ରାଧା କିନ୍ତୁ କୃଷ୍ଣଙ୍କୁ ପ୍ରତୀକ୍ଷା କରି କରି ସମଗ୍ର ରଜନୀ ଅତିବାହିତ କରି ଅତ୍ୟନ୍ତ ଖିନ୍ନ କ୍ଷୁବ୍ଧ ଏବଂ ଉତ୍କ୍ଷିପ୍ତ ହୋଇ ଫେରି ଆସି ନିଜ ପ୍ରିୟସଖୀକୁ ତିରସ୍କାର କରିଛନ୍ତି ଓ ଆଉ କୃଷ୍ଣ ପ୍ରୀତି କରିବେ ନାହିଁ କିମ୍ବା କୃଷ୍ଣ ନାମ କୃଷ୍ଣ ବର୍ଣ୍ଣ ସନ୍ନିବିଷ୍ଟ ପଦାର୍ଥ ସ୍ପର୍ଶ କରିବେ ନାହିଁ ବୋଲି ଶପଥ ଗ୍ରହଣ କରିଛନ୍ତି ।

ଏଣେ ଶ୍ରୀକୃଷ୍ଣ ଆସି ଶ୍ରୀରାଧାଙ୍କ ପୁରରେ ପହଞ୍ଚି ପ୍ରଥମେ ଦୂତୀର ସମ୍ମୁଖୀନ ହୁଅନ୍ତେ ଦୂତୀ ତାଙ୍କୁ ରାଧାଙ୍କୁ ପ୍ରତାରଣା କରିବାର କାରଣ ଜିଜ୍ଞାସ କରିଛି । ଶ୍ରୀକୃଷ୍ଣ ନାନାଦି ଛଳନାର ଆଶ୍ରୟ ନେଇ ଦୂତୀ ନିକଟରେ କେତେକ ଯୁକ୍ତି ବାଢ଼ି ଛନ୍ତି । ଶ୍ରୀକୃଷ୍ଣ ଦୂତୀ ନିକଟରୁ ରାଧା କୃଷ୍ଣ ପ୍ରୀତି ବର୍ଜନ କରିବା କଥା ଶୁଣି ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଛନ୍ତି ଓ ରାଧାଙ୍କୁ ସାକ୍ଷାତ କରିବାକୁ ଦୂତୀକୁ ନିବେଦନ କରିଛନ୍ତି । ଏହା ପରେ ଦୂତୀ ଶ୍ରୀକୃଷ୍ଣଙ୍କୁ ନେଇ ରାଧାଙ୍କ ନିକଟରେ ପହଞ୍ଚାଇ ଦିଅନ୍ତେ ଶ୍ରୀକୃଷ୍ଣ ନିଜର ଦୋଷ ସ୍ୱୀକାର କରି ରାଧାଙ୍କ ଠାରୁ କ୍ଷମା ଭିକ୍ଷା କରିଛନ୍ତି । କିନ୍ତୁ ଅଭିମାନିନୀ ରାଧା ତାଙ୍କର ସମସ୍ତ ଆବେଦନ ପ୍ରତ୍ୟାକ୍ଷ୍ୟାନ କରିଛନ୍ତି । ଏହା ପରେ ମାୟାଧର ଶ୍ରୀକୃଷ୍ଣ ଅନ୍ୟ ଉପାୟ ନପାଇ ରାଧାଙ୍କ ବିରହରେ ସଂସାର ତ୍ୟାଗ କରି ସନ୍ନ୍ୟାସୀ ହେବା ଉଦ୍ଦେଶ୍ୟରେ ଯୋଗୀନ୍ଦ୍ର ରୂପରେ ନିଜକୁ ସଜାଇ ଦେବାକୁ ରାଧାଙ୍କ ଅଗୋଚରରେ ସଖୀ ବୃନ୍ଦାବତୀକୁ ଅନୁରୋଧ କରିଛନ୍ତି ।

ଏହାପରେ ମୁଣ୍ଡରେ ଜଟା ଦେହରେ କୌପିନ ବେକରେ ରୁଦ୍ରାକ୍ଷ ପକାଇ ଯୋଗୀ ବେଶରେ ବାହାରି ପଡ଼ିଛନ୍ତି ମୋହନ ସୁନ୍ଦର ଶ୍ରୀକୃଷ୍ଣ । ହାତରେ କମଣ୍ଡଳୁ ଧରି ବ୍ରଜଦାଣ୍ଡରେ ଭିକ୍ଷା କରି ବୁଲନ୍ତେ ତାଙ୍କୁ ପ୍ରଥମେ ବିଶାଖା ଚିହ୍ନି ପାରିଛି ଏବଂ ସେହି ସଖୀମାନଙ୍କ ସହାୟତାରେ ଶ୍ରୀକୃଷ୍ଣ ଚନ୍ଦ୍ର ରାଧାଙ୍କ ପୁରକୁ ଭିକ୍ଷା କରି ଯାଇଛନ୍ତି ।

ଶ୍ରୀରାଧାଙ୍କ ପୁରରୁ ସଖୀ ଭିକ୍ଷା ନେଇ ଆସନ୍ତେ , ସଖୀ ହସ୍ତରୁ ଭିକ୍ଷା ନନେଇ ସ୍ୱୟଂ ଶ୍ରୀରାଧାଙ୍କ ହସ୍ତରୁ ଭିକ୍ଷା ନେବାକୁ ଯୋଗୀନ୍ଦ୍ର ରୂପୀ ମାୟାଧର ଶ୍ରୀକୃଷ୍ଣ ଚାହିଁଛନ୍ତି । ତେଣୁ ଶ୍ରୀରାଧା ଭିକ୍ଷା ଦେବାକୁ ଆସିଛନ୍ତି ଏବଂ ନିଜ ପ୍ରାଣ ପ୍ରିୟ ଶ୍ରୀକୃଷ୍ଣଙ୍କୁ ଏକ ଯୋଗୀନ୍ଦ୍ର ବେଶରେ ଦେଖି ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଛନ୍ତି । ଶେଷରେ ସେ ଯାହା ମାଗିବେ ତାହା ଦେବାକୁ ଶ୍ରୀରାଧା ଶପଥ କରିଛନ୍ତି । ଶ୍ରୀକୃଷ୍ଣ ଏହି ସୁଯୋଗରେ ମାନ ଭିକ୍ଷା କରିଛନ୍ତି ଓ ପରିଶେଷରେ ଶ୍ରୀରାଧାଙ୍କ ସହ ସମ୍ମିଳିତ ହୋଇ ସମ୍ଭୋଗ ରତି ବିଳାସରେ ନିମଜ୍ଜିତ ହୋଇଛନ୍ତି ।

**ନାମକରଣ** :—ଆଲୋଚ୍ୟ ରାଧାକୃଷ୍ଣ ପ୍ରେମ ମୂଳକ ଆଖ୍ୟାନ "ମାନଭଞ୍ଜନ" ରାଧା ଓ କୃଷ୍ଣଙ୍କ ପ୍ରେମ ଉପରେ ସମ୍ପୂର୍ଣ୍ଣ ଭାବରେ ଆଧାରିତ । ରାଧାଙ୍କର କୃଷ୍ଣଙ୍କ ସହ ମିଳିତ ହେବାର ଅଭୀପ୍ସା, ସେଥି ନିମନ୍ତେ ନିଜର ପ୍ରିୟ ସଖୀକୁ ଦୂତୀକୁ ଶ୍ରୀକୃଷ୍ଣଙ୍କ ପାଖକୁ ପ୍ରେରଣ, କୃଷ୍ଣ ଚନ୍ଦ୍ରଙ୍କ ପ୍ରତିଶ୍ରୁତି ଓ ପ୍ରତାରଣା, ସେହି ରାଗରେ କୃଷ୍ଣ ପ୍ରୀତି ବର୍ଜନ କରିବାର ଶପଥ, ଶ୍ରୀକୃଷ୍ଣଙ୍କର ଶ୍ରୀରାଧାଙ୍କୁ କ୍ଷମା ଭିକ୍ଷା, ରାଧାଙ୍କର ପ୍ରତ୍ୟାଖ୍ୟାନ ଓ ଶେଷରେ ଶ୍ରୀକୃଷ୍ଣ ଯୋଗୀନ୍ଦ୍ର ରୂପରେ ଆସି ଶ୍ରୀରାଧାଙ୍କର ମାନଭଞ୍ଜନ କରିବା ଆଲୋଚ୍ୟ ଗୀତାଭିନୟର ମୁଖ୍ୟ କଥାବସ୍ତୁ ହୋଇ ଥିବାରୁ ଓ ପରିଶେଷରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ମାନଭଞ୍ଜନ କରି ରତି ବିଳାସରେ ନିମଜ୍ଜିତ ହୋଇ ଥିବାରୁ ଏବଂ ସର୍ବୋପରି ଶ୍ରୀରାଧାଙ୍କ

ମାନଭଞ୍ଜନ ହିଁ ନାଟକର ଉତ୍କର୍ଷ ପ୍ରତିପାଦନ କରୁଥିବାରୁ, ଆଲୋଚ୍ୟ ଗ୍ରନ୍ଥ ନାଟ୍ୟ 'ମାନଭଞ୍ଜନ' ର ନାମକରଣ ମାନଭଞ୍ଜନ ହେବା ଯୁକ୍ତି ଯୁକ୍ତ ଓ ସାର୍ଥକ ହୋଇଛି ।

## ରଚନା କାଳ :—

କବି ଜଗନ୍ନାଥ ପାଣିଙ୍କ ରଚିତ ମାନଭଞ୍ଜନ ଯେପରି ସମ୍ପୋଷିଣ୍ଡି ସେପରି ସୁଲଳିତ ହୋଇଅଛି । ଭାଷା, ଶବ୍ଦ ବିନ୍ୟାସ । ସଂଳାପ ସଂଯୋଜନା ଓ ସାଙ୍ଗୀତିକତା ଦୃଷ୍ଟିରୁ ଏହା ଏକ ସାର୍ଥକ ସୃଷ୍ଟି । ଏଥିରେ ଅଯଥା ଶବ୍ଦାଡ଼ମ୍ବର ନାହିଁ କିମ୍ବା ଅକାରଣ ଦୁର୍ବୋଧତା ନାହିଁ, କିନ୍ତୁ ଏଥିରେ ଜ.ନ ମନ ହରଣ କରିବାର ଯଥେଷ୍ଟ ଉପାଦାନ ସନ୍ନିବେଶିତ ହୋଇ ଅଛି । ତେଣୁ ଏହା କବିଙ୍କର ଆଦ୍ୟ ବୟସର ଅପରିପକ୍ୱ ଭାବନାର ଅଥବା କଞ୍ଚା ହାତର ଲେଖା ନୁହେଁ, କିମ୍ବା ପରିପକ୍ୱ ବୟସ ବା ଜୀବନର ଶେଷ ସମୟର ସୃଷ୍ଟି ନୁହେଁ । ଅ'ଓାତଡତଃ ଏହା ତାଙ୍କ ଲେଖା ଲେଖି ଆରମ୍ଭ କରିବା ପରର କଥା । କବି ଜଗନ୍ନାଥ ପାଣି ନିଶ୍ଚିତ ଭାବେ ତାଙ୍କ ଲେଖକ ଜୀବନର ଆରମ୍ଭରେ ବହୁ କାବ୍ୟ କବିତାମାନ ଲେଖିଛନ୍ତି । ଜୀବନର ମଧ୍ୟ ବୟସରେ ଅର୍ଥାତ ୧୮୭୦ ମସିହା ପରେ ତାଙ୍କ ଯାତ୍ରାଦଳ ଗଠନ କରିବାର ଠିକ୍ ପରେ ପରେ ସେ ଏହାକୁ ରଚନା କରିଥିବାର ମତେହୁଏ । କାରଣ ଏହି ଗୀତାଭିନୟର ପାତ୍ର ପାତ୍ରୀ ସଂଖ୍ୟା ଖୁବ୍ କମ୍ । ତା ଛଡା ଉକ୍ତ ଗୀତାଭିନୟ କୃଷ୍ଣ ଭକ୍ତି ରସ ଲୀଳାର ଅନ୍ତର୍ଗତ । ନାଟ୍ୟ ଦଳର ଲୋକ ପ୍ରିୟତା ନିମନ୍ତେ ଏହା ନିଶ୍ଚିନ୍ତ ଭାବେ ଉଦ୍ଦିଷ୍ଟ । କାରଣ ସେ ଯେତେବେଳେ ଗ୍ରାମର ଯୁବକ ମାନଙ୍କୁ ନେଇ ଯାତ୍ରା ଦଳ ଆରମ୍ଭ କରିଥିବେ, ସେତେବେଳେ ଏହିପରି ସର୍ବଜନ ଲୋକପ୍ରିୟ କୃଷ୍ଣ ଲୀଳା ମଞ୍ଚସ୍ଥ କରି ନିଜର ତଥା ନାଟ୍ୟ ଦଳର ଲୋକପ୍ରିୟତା ଅର୍ଜ୍ଜନ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିବେ । ତାଂକ ଯାତ୍ରା ଦଳର ଚୁକ୍ତିନାମାରୁ ଯାହା ପ୍ରମାଣ ମିଳେ ସେ ନିଶ୍ଚିତ ଭାବେ ୧୮୭୫ ମସିହା ବେଳକୁ ଯାତ୍ରାଦଳ ଗଢି ସାରିଥିଲେ । ତେଣୁ "ମାନ ଭଞ୍ଜନ" ଶୀର୍ଷକ କୃଷ୍ଣ ଲୀଳା ନିଶ୍ଚିତ ଭାବେ ୧୮୭୫ କିମ୍ବା ତାର ସାମାନ୍ୟ ପୂର୍ବରୁ ରଚିତ ହୋଇଥିବା ଅନୁମେୟ ।

## ନାଟକୀୟତା —

ଆଲୋଚ୍ୟ ଲୀଳା ବା ଗ୍ରନ୍ଥନାଟ୍ୟ 'ମାନଭଞ୍ଜକ' ର କଥାବସ୍ତୁ କେବଳ ମାତ୍ର ଜଣେ ଅଭିନେତା ଓ ପାଞ୍ଚ ଛଅ ଜଣ ଅଭିନେତ୍ରୀଙ୍କୁ ନେଇ ରଚିତ ହୋଇଥିଲେହେଁ, ଏହି ସର୍ବଜନ ବିଦିତ ପୌରାଣିକ ଆଖ୍ୟାନକୁ କବି ଜଗନ୍ନାଥ ପାଣି ଏକ ଅପୂର୍ବ ଶୈଳୀରେ ନାଟକୀୟ କରି ଗଢି ତୋଳିଛନ୍ତି । ଶ୍ରୀକୃଷ୍ଣଂକର ବୃନ୍ଦାବନ କେଳିକୁଞ୍ଜକୁ ଆସିବା ବାଟରେ ଚନ୍ଦ୍ରାବଳୀ ପୁରରେ ପ୍ରବେଶ କରିବା ଓ ଚନ୍ଦ୍ରାବଳୀ ନିଜର ଗୃହକୁ ରେ କୃଷ୍ଣଙ୍କୁ ବାନ୍ଧି ରଖି ପ୍ରୀତିଦାନ କରିବା, କୁଟିଳା ସହ ଶ୍ରୀରାଧାଂକର କଳହ, କୃଷ୍ଣ ଚନ୍ଦ୍ରଙ୍କର ଦୂତୀ ନିକଟରେ ଛଳନାପୂର୍ଣ୍ଣ ଉକ୍ତି, ଶ୍ରୀରାଧାଂକର ଅଭିମାନ ମାନଭଞ୍ଜନ ନିମିତ୍ତ

ଶ୍ରୀକୃଷ୍ଣଂକର ଯୋଗୀନ୍ଦ୍ର ରୂପ ଧାରଣ ଏବଂ ପରିଶେଷରେ ଶ୍ରୀରାଧାଂକ ମାନଭଞ୍ଜନ ଓ ମିଳନ ଆଲୋଚ୍ୟ 'ମାନଭଞ୍ଜନ' ରେ ଯଥାଯଥ ନାଟକୀୟତା ସୃଷ୍ଟି କରି ପାରିଛି ।

## ସାଙ୍ଗୀତିକତା :—

ସଙ୍ଗୀତ ହେଉଛି ଲୀଳା, ସୁଆଙ୍ଗ ଓ ଗୀତାଭିନୟାଦିର ପ୍ରଧାନ ଅଙ୍ଗ । ଏ ପ୍ରକାର ଲୋକ ନାଟ୍ୟର ସ୍ୱଭାବ ସୁଲଭ ଭଙ୍ଗୀରେ ଉଭୟ ବର୍ଣ୍ଣନା ଓ ସଲାପରେ ସଙ୍ଗୀତ ହିଁ ପ୍ରାଧାନ୍ୟ ଲାଭ କରିଥାଏ । ଆଲୋଚ୍ୟ ଲୀଳା ବା ଛନ୍ଦନାଟ୍ୟ 'ମାନଭଞ୍ଜନ' ରେ କବି ସ୍ୱର୍ଗତ ପାଣି ବିଭିନ୍ନ ରାଗ ରାଗିଣୀରେ ଏହାକୁ ସୁ ସଂଯୋଜିତ କରି ଶ୍ରବଣ ସୁଖ-ଦାୟୀ କରିବାକୁ ଚେଷ୍ଟା କରି ସଫଳ ହୋଇ ପାରିଛନ୍ତି । ଏ ଛନ୍ଦନାଟ୍ୟରେ କୌଣସି ଗଦ୍ୟ ସଲାପ ବା ଗଦ୍ୟ ବର୍ଣ୍ଣନା ନାହିଁ । ସଙ୍ଗୀତହିଁ ଏଥିରେ ମୁଖ୍ୟ ବିଭାବ ଭାବରେ ପ୍ରକଟିତ ହୋଇଛି । ତାହାକୁ ଅଧିକ ଲାଳିତ୍ୟପୂର୍ଣ୍ଣ ଓ ଲୋକ ପ୍ରିୟତା କରିବା ପାଇଁ ନାଟ୍ୟକାର ସ୍ୱର୍ଗତ ପାଣି ବହୁ ସ୍ଥାନରେ ଶବ୍ଦ ଯୋଜନାରେ ଏକ ଅଭିନବ ଚାତୁର୍ଯ୍ୟ ପୂର୍ଣ୍ଣ ଭଙ୍ଗୀ ପ୍ରଦର୍ଶନ କରିଛନ୍ତି । ବିଶେଷ କରି ବହୁ ସ୍ଥାନରେ ଯୋଡ଼ି ଯମକ ଓ ଆଦ୍ୟଯମକ ଆଦି ଅଳଂକାରର ସଂଯୋଜନା କରିଛନ୍ତି, ଯଥା :—

> "ହାହି ଶ୍ରୀରାଧିକେ ହାହି ଗାନ୍ଧର୍ବିକେ ହାହି ହାହି ପ୍ରାଣାଧିକେ
> ହାହି ବ୍ରଜେଶ୍ୱରୀ ହାହି ପୁରନ୍ଦରୀ ଚାହିଁ କରୁଣା କଟାକ୍ଷେ ।"

ଅଥବା—"ପୋଡ଼ୁ ପୋଡ଼ୁ କୃଷ୍ଣ ପ୍ରୀତି ପୋଡ଼ୁ ମୋ ଜୀବନ
ପୋଡ଼ୁ ପୋଡ଼ୁ ବୃନ୍ଦାବନ ଚୋ ମଧୟ ପଣ ।
ପୋଡ଼ି ଯାଉ ଶ୍ୟାମ ପ୍ରୀତି ଆଉ ନ କରିବ
ପୋଡ଼ି ଯାଉ ବଂଶୀ ସ୍ୱନ ଆଉ ନ ଶୁଣିବ ।" (୩)

ଇତ୍ୟାଦି ।

ସୁତରାଂ ସୁଆଙ୍ଗ ବା ଗୀତାଭିନୟରେ ଯେଉଁଭଳି ସାଙ୍ଗୀତିକ ସାମ୍ୟ ରକ୍ଷା କରିବା କଥା ମାନଭଞ୍ଜନରେ ସେଉଁଭଳି ସାଙ୍ଗୀତିକ ପାଟବତା ରକ୍ଷା କରି ନାଟ୍ୟକାର କବି ଜଗନ୍ନାଥ ପାଣି ନିଜର କାବ୍ୟିକ ତଥା ନାଟ୍ୟ ପ୍ରତିଭାର ଯଥାର୍ଥ ପରିଚୟ ପ୍ରଦାନ କରି ଯାଇଛନ୍ତି ।

## ରସ ପରିବେଷଣ :—

ସାଧାରଣତଃ କାବ୍ୟ ଓ ନାଟକରେ ରସ ପରିବେଷଣ ପାଇଁ ତାହାର ମୁଖ୍ୟ ବିଭାବ ଭାବେ ପରିଗଣିତ ହୋଇଥାଏ । ରସହିଁ ସାହିତ୍ୟର ଆତ୍ମା ଭାବରେ ସ୍ୱୀକୃତ ।

ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ ଗୀତିନାଟ୍ୟ ମାନଭଞ୍ଜନରେ ପରିବେଷିତ ବିଭିନ୍ନ ରସ ସମ୍ପର୍କରେ ନିମ୍ନରେ ଆଲୋକପାତ କରାଯାଇପାରେ ।

## ଶୃଙ୍ଗାର ରସ :—

'ମାନଭଞ୍ଜନ' ଗୀତିନାଟ୍ୟରେ ମୁଖ୍ୟତଃ ଶୃଙ୍ଗାର ରସ ହିଁ ପ୍ରାଧାନ୍ୟ ଲାଭ କରିଛି । କାମ ଜର୍ଜରିତା ଶ୍ରୀକୃଷ୍ଣ ବାଉଳି ରାଧା କୃଷ୍ଣ ପ୍ରୀତି ପାଇଁ ପାଗଳିନୀ ହୋଇ ଉଠିଛନ୍ତି ଓ ବିରହାନଳରେ ଦଗ୍ଧୀଭୂତା ହୋଇ ନିଜର ପ୍ରିୟ ସଖୀ ବୃନ୍ଦାବତୀଙ୍କୁ ଦୂତୀ ରୂପରେ ଶ୍ରୀକୃଷ୍ଣ ନିକଟକୁ ପ୍ରେରଣ କରିଛନ୍ତି । ଶ୍ରୀରାଧାଙ୍କ ବିରହ ଓ କାମୋଦ୍ଦୀପକ ଅଭିବ୍ୟକ୍ତିରୁ ଯେପରି ଭାବେ ଶୃଙ୍ଗାର ରସ ଫୁଟି ଉଠିଛି । ଠିକ୍ ସେହିପରି ଭାବରେ ଚନ୍ଦ୍ରାବଳୀର ଶ୍ରୀକୃଷ୍ଣଙ୍କ ସହ ରତିବିଳାସ ତଥା ଶ୍ରୀକୃଷ୍ଣଙ୍କର ଶ୍ରୀରାଧାଙ୍କୁ କ୍ଷମା ଭିକ୍ଷା ଛଳରେ ପ୍ରୀତି ଭିକ୍ଷା ଏବଂ ପରିଶେଷରେ ଯୋଗୀନ୍ଦ୍ର ରୂପ ଧାରଣ କରି ଶ୍ରୀରାଧାଙ୍କ ମାନଭଞ୍ଜନ କରିବାରେ ଶୃଙ୍ଗାର ରସର ନିର୍ଝର ପ୍ରବାହିତ ହୋଇ ପାରିଛି ।

ଉଦାହରଣ ସ୍ୱରୂପ :—

"କନ୍ଦର୍ପ କାତରେ ଦେହ କମ୍ପେ ଥର ହର ।
ନ ଚଳେ କର ଚରଣ ଅଧୈର୍ଯ୍ୟ ଶରୀର ।
ବିରହ ଅନଳେ ଦେହ ଜଳେ ଅନୁକ୍ଷଣ
ବିଷ ପ୍ରାୟ ଘାରଇ ଏ ମଳୟ ପବନ ।
ଉନ୍ମାଦ ମଦନମଦେ ହୋଇ ଉନ୍ମାଦିନୀ ।
ଶ୍ୟାମ ଶ୍ୟାମ ବୋଲି ଝାମ୍ପ ଯାଏ ବିନୋଦିନୀ ।"

ଅଥବା

ଚନ୍ଦ୍ରାବଳୀ ପୁରରେ

"ମଦନ ମୋହନ ମନ କରାଇ ଉଚ୍ଛନ୍ନ ।
ଶ୍ରୀ କରେ ସମର୍ପି ଦେଲେ ନବୀନ ଯୌବନ ॥
ବିବିଧ ବିନୋଦ ପ୍ରଭୁ ବିନୋଦ ବିହାରୀ ।
ବିନୋଦିନୀ ଚନ୍ଦ୍ରାବଳୀ ସଙ୍ଗେ କଲେ କେଳି ॥
ଚଉଷଠି ପ୍ରବନ୍ଧ ବାତ୍ସ୍ୟା କ୍ରୀଡ଼ା ରସେ ।
ବୋଲେ ଜଗନ୍ନାଥ ଚନ୍ଦ୍ର ନିଶି ଅବକାଶେ ॥"

ଏହି ଶୃଙ୍ଗାର ଭିତରେ ମଧ୍ୟ ବହୁ ସ୍ଥାନରେ କୃଷ୍ଣ ଭକ୍ତି ରସ ପ୍ରଚ୍ଛନ୍ନ ଭାବରେ ରୂପାୟିତ ହୋଇଛି । ବିଭୁ ପ୍ରେମରେ କେବଳ ଶ୍ରୀରାଧା ନୁହନ୍ତି ଚନ୍ଦ୍ରାବଳୀ, ବୃନ୍ଦାବତୀ ଏପରିକି ପ୍ରତ୍ୟେକ ଗୋପାଙ୍ଗନା ମଧ୍ୟ ନିମଜ୍ଜିତା ହେବାକୁ ଅଭିଳାଷୀ ।

## ହାସ୍ୟ ରସ :–

ସମଗ୍ର ଲୀଳା ସମାଜ ବା ଛାନ୍ଦନାଟ୍ୟ ଟିରେ ଆଦିରସ ବା ଶୃଙ୍ଗାର ରସ ପ୍ରାଧାନ୍ୟ ଲଭ କରିଥିଲେ ହେଁ କେତେକ ସ୍ଥାନରେ ହାସ୍ୟ ରସ ମଧ୍ୟ ପରିବେଷିତ ହୋଇଛି । ଶ୍ରୀକୃଷ୍ଣଙ୍କ ଯୋଗୀନ୍ଦ୍ର ରୂପ ଧାରଣ, କୁଟିଳା ଓ ଶ୍ରୀରାଧାଙ୍କର ଶ୍ଳେଷ କଷା-ଘିଭ ଉକ୍ତି ପ୍ରତ୍ୟୁକ୍ତି ଓ ଭ୍ରମ ବଶତଃ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ କେଳିକୁଞ୍ଜକୁ ଯିବା ପରିବର୍ତ୍ତେ ଚନ୍ଦ୍ରାବଳୀ ପୁରରେ ପ୍ରବେଶ ଓ ରତି କ୍ରୀଡାରେ ରାତ୍ରି ଯାପନ ପାଠକ ଓ ଦର୍ଶକଙ୍କ ପାଣରେ ଯଥେଷ୍ଟ ହାସ୍ୟ ରସ ଉଦ୍ରେକ କରେ ।

ଉଦାହରଣ ସ୍ୱରୂପ :—

ଯୋଗେନ୍ଦ୍ର ରୂପ ଦେଖି ବ୍ରଜସୁନ୍ଦରୀ ପାଦେପଡ଼ି କହଇ ବିନୟ କରି
ହେ ଯୋଗୀନ୍ଦ୍ର ବର, କାହିଁ ନିବାସ କସ ନାମ ତୁମ୍ଭର ॥
କୃଷ୍ଣ କହନ୍ତି କାଶୀ କ୍ଷେତ୍ରେ ମୋ ଘର ଯୁଗଳ ମନ୍ତ୍ର ସାଧ ହରିହରର
ଗୋ ନାଗରୀ ବର, ରାଧାନାଥ ମୋ ନାମ ଯୋଗୀଈଶ୍ୱର ॥
କି କାର୍ଯ୍ୟେ ବିଜେ ଏହି ବରଜ ଧାମେ କି ସୁଖ ଅଛି ଏହି ଦୁଃଖ ସଦନେ
ହେ ଯୋଗୀନ୍ଦ୍ରବର, ତୀର୍ଥ ଛାଡ଼ିଣ କମ୍ପା ଭ୍ରମ ବ୍ୟର୍ଥର ॥
ଶ୍ରୀରାଧା ରାଜଧାନୀ ଶୁଣିଣ ମୁହିଁ ଆସିଛି ଭିକ୍ଷା କିଛି ନେବାପାଇଁ
ଗୋ ନାଗରୀବର, ତୁମ୍ଭକୁ ଜଣାଇଣ ବିଦାୟ କର ॥

## ସଂଳାପ ଶୈଳୀ :

ନାଟକ ପ୍ରଧାନତଃ ଦୃଶ୍ୟ କାବ୍ୟ ଭାବେ ଅଭିହିତ । ତେଣୁ ସ୍ଥାନ କାଳ ପାତ୍ର ଭିତ୍ତିରେ ପାତ୍ର ପାତ୍ରୀଙ୍କ ମୁଖରେ ଯଥା ସ୍ଥାନରେ ସଂଳାପ ସଂଯୋଜନା କରିବା ନାଟ୍ୟ କଳାର ପ୍ରଧାନ ଧର୍ମ । ସେହି ଧାରାରେ ଏହି ଛାନ୍ଦନାଟ୍ୟ 'ମାନଭଞ୍ଜନ'ରେ କବି ସ୍ୱର୍ଗତ ପାଣି ଯଥାର୍ଥ ଗୀତ ସଂଳାପ ସଂଯୋଜନା କରିଛନ୍ତି । ତୃତୀୟ ଛାନ୍ଦରେ ଦୂତୀ ଓ ଶ୍ରୀକୃଷ୍ଣଙ୍କ ଉକ୍ତି ପ୍ରତ୍ୟୁକ୍ତି, ଚତୁର୍ଥ ଛାନ୍ଦରେ ଶ୍ରୀରାଧାଙ୍କର ଦୂତୀକୁ ଶ୍ରୀକୃଷ୍ଣଙ୍କ କୁଶଳ ଜିଜ୍ଞାସା, ପଞ୍ଚମ ଛାନ୍ଦରେ ଦୂତୀର ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କ ବାର୍ତ୍ତା ପ୍ରଦାନ, ସପ୍ତମ ଛାନ୍ଦରେ ରାଧା ଓ କୁଟିଳା ମଧ୍ୟରେ କଟୁକ୍ତି ଭରା ଉକ୍ତି ପ୍ରତ୍ୟୁକ୍ତି, ପଞ୍ଚଦଶ ଛାନ୍ଦରେ କୃଷ୍ଣ ଓ ବୃନ୍ଦାବତୀଙ୍କର ଉକ୍ତି ପ୍ରତ୍ୟୁକ୍ତି, ଷୋଡ଼ଶ ଛାନ୍ଦରେ ବୃନ୍ଦାବତୀଙ୍କର ଶ୍ରୀକୃଷ୍ଣଙ୍କୁ ଆକ୍ଷେପ, ଅଷ୍ଟାଦଶ ଛାନ୍ଦରେ ଚନ୍ଦ୍ରରେଖାର ଶ୍ରୀକୃଷ୍ଣଙ୍କୁ ବ୍ୟଙ୍ଗୋକ୍ତି ଓ ଶ୍ରୀରାଧାଙ୍କୁ ସାନ୍ତ୍ୱନା, ଊନବିଂଶ ଛାନ୍ଦରେ ଦୂତୀ ଓ ଶ୍ରୀକୃଷ୍ଣଙ୍କର ଉକ୍ତି ପ୍ରତ୍ୟୁକ୍ତି । ତ୍ରୟୋବିଂଶ ଛାନ୍ଦରେ ବିଶାଖା ଓ ଶ୍ରୀକୃଷ୍ଣଙ୍କର କଥୋପକଥନ, ପଞ୍ଚଦଶ ଛାନ୍ଦରେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କର ଉକ୍ତି ପ୍ରତ୍ୟୁକ୍ତି, ଯଥାସ୍ଥାନରେ ବର୍ଣ୍ଣିତ ହୋଇଛି ଏବଂ ତହିଁରେ ଯଥାର୍ଥ ଗୀତ ସଂଳାପମାନ ସଂଯୋଜିତ ହୋଇଅଛି । ଯାହାକି ସ୍ୱର୍ଗତ ପାଣିଙ୍କର ନାଟ୍ୟ ପ୍ରତିଭାର ପ୍ରକୃତ ପରିଚୟ ପ୍ରଦାନ କରେ । ଯଥା :—

ଦୂତୀ—ଉନ୍ମାଦ ମଦନ ମଦେ ହୋଇ ଉନ୍ମାଦିନୀ ।
ଶ୍ୟାମ ଶ୍ୟାମ ଝାମ୍ପି ଯାଏ ବନୋଦ୍ଦିନୀ ॥
ପଲ୍ଲବ ଶଯ୍ୟାରେ ଶୋଇ ଅଇଲ କାମିନୀ ।
ମୋର ଯିବା ଯାଏ, ଜୀବ ଥିବକି ଯିବନି ॥

ଶ୍ରୀକୃଷ୍ଣ—ଯାଅ ଯାଅ ଦୂତୀ ଯାଅ କହିବୁ ରାଧାକୁ ।
ରାଜ ଅଙ୍କ'ମାନ ଆଜ ଯିବ ତା' କୁଞ୍ଜକୁ ॥
ମୋହ ଯିବା ଯାଏ ଶାନ୍ତ କରୁଥିବୁ ପୁଣି ।

× × ×

କୁଟିଲା—ମୋ ମୁହଁ ଲୁଟିଲ ଫାଟିଲ କପାଳ ତୋର ।
କାଟିଲ ଘାଆରେ ବାଟିଲ ଚୂନକୁ ଉଠିଲାରୁ ଦେଉ ମୋର ॥
ଲୋ କୁଳ କଳଙ୍କି ତୁହି
ଲାଜ ନାହିଁ ରାଜସୁତା ହୋଇ ॥

ରାଧା—ମରକଟ ସ୍ତନୀ ସରକଟ ବାଞ୍ଛି କରକଟ ତୁଠା କଏ
ଅଘଟ ଘଟଣ କରୁ ପ୍ରଘଟଣ ନନ୍ଦସୁତ ସଙ୍ଗେ ଥାଏ ।
ଲୋ ପଡ଼ଶାଙ୍କୁ ରୁଣ୍ଡାଇ
ଡକା ପକାଉ ଠୋକା ଭଣ୍ଡାଇ ॥ ଇତ୍ୟାଦି···

କୁଟିଲା—ଅତ ସତୀ ତୁହି ରାତରାତ ଯାଇ ବନେ ଶ୍ୟାମ ସଙ୍ଗେ ବସୁ ।
ଯମୁନା କୂଳକୁ ଗଲେ ସକାଳକୁ ବେଳକୁ ବୁଡ଼ାଇ ଆସୁ ॥
ଲୋ ବଂଶୀ ବାଜିଲା କ୍ଷଣି
ମିଛେ ଥାଉ ଯାଉ ପାଣିଆଣି ॥

ରାଧା—ଭଣ୍ଡି ଖାଇ ରାଣ୍ଡି ମୋଟ କର ଗଣ୍ଡି ଚଣ୍ଡି ପର ପହଣ୍ଡିକୁ
ଦଣ୍ଡୁ ଦଣ୍ଡାହାତ ଖଣ୍ଡି ଖଣ୍ଡି କର ଉଣ୍ଡି ଭାଙ୍ଗିବ ମରବୁ ।
ଆଲୋ ଅଣ୍ଡିରି ଚଣ୍ଡି
ଦଣ୍ଡି ଆସୀ ଝୁରି ଝୁରି ମୁଣ୍ଡି ॥

କୁଟିଲା—ମୋହନୀ ମୋହନ ମୁହିଁ ମୋର ଆଗେ କହୁ ମୁହଁକୁ ବୁଲାଇ
ତୋହଲାଗି ମୋ ଭାଇ ମୁହଁ ଟେକ କେଣିକି ନପାରେପାଇ ।
ଲୋ ତୋତେ ହେଲାରୁ ବର୍ଷ,
ବସିଲଣି ସାତ ସାଇ ସଭା ॥

ରାଧା—ଦାସୀ ପର ଆସି ମୋହଘରେ ପଶି ଦବାନଳୀ ବସି ଖାଉ ।
ଅଡ଼ସା ଲଗାଇ ପଡ଼ଶା ଦୁଆରେ ମୋହର ନୁଗୁଲି କହୁ ॥

ଲୋ ଦେଖି ସ୍ୱଭାବ ତୋ'ର
ଡରେ ଭଣଜା ନଆସେ ମୋର ॥

କୁଟିଳା—ହଟହଟା କଲୁ ହାଟ ବସାଇଲୁ ହଟିଆ ସଙ୍ଗତେ ମାତି
ଜାତି ପାଟକରେ ମନାହେଲ ତୋତେ ନ ଛାଡ଼ିଲୁ ଶ୍ୟାମ ପ୍ରୀତି । (୯)

ଏ କ୍ଷେତ୍ରରେ ଶ୍ରୀରାଧାଙ୍କ ମୁଖରେ ସନ୍ତୋଷଜନକ ଭାଷାରେ ସାମାନ୍ୟ ଅସଙ୍ଗତ ହୋଇଛି ଓ ପାଶାଙ୍କମୁଖୀ ସଂଳାପ ହୋଇ ପାରନ୍ତି । ଜଗନ୍ନାଥପାଣି ମୁଖ୍ୟତଃ ଜଣେ ଲୋକ କବି ଓ ଲୋକ ନାଟ୍ୟକାର । ସାଧାରଣ ଗାଁଗହଳି ନଣନ୍ଦ ଭାଉଜ କଳହକୁ ଆଧାର କରି ଜନ ସାଧାରଣଙ୍କ ହୃଦୟକୁ ଛୁଇଁଲା ଭଳି ସଂଳାପ ସନ୍ତୋଜନା କରିବାକୁ ଚେଷ୍ଟା କରିଛନ୍ତି । ଏତଦ୍ ବ୍ୟତୀତ ଅଭିନୟର ପରିସର ସମ୍ପ୍ରସାରିତ କରିବା ପାଇଁ ଏବଂ ଦର୍ଶକମାନଙ୍କ ନିକଟରେ କିଛିଟା ହାସ୍ୟରସ ପରିବେଷଣ କରିବା ପାଇଁ ନାଟ୍ୟକାର ସ୍ୱର୍ଗତ ପାଣି ବୋଧହୁଏ ଏପରି ସଂଳାପ ରାଧାଙ୍କ ମୁଖରେ ସଂଯୋଗ କରିଛନ୍ତି ।

ପଞ୍ଚଦଶ ଛାନ୍ଦରେ ବୃନ୍ଦାବତୀ ସହ ଶ୍ରୀକୃଷ୍ଣଙ୍କ ଉକ୍ତି ପ୍ରତ୍ୟୁକ୍ତି ଅତୀବ ଚମତ୍କାର ହୋଇଅଛି । ଯଥା :—

ବୃନ୍ଦା—ବ୍ରଜରାଜ ହୋଇ ଏତେ କପଟ ତୁମ୍ଭର
କାହାପୁରେ ଥିଲ କୁହ ଲମ୍ପଟ ନାଗର ।
ଆହେ ନାରୀ ଚିତ୍ତ ଚୋର
ରାଧାଠାରୁ ଏତେଶୋଭା ଅଛନ୍ତି କେ ମହୀର ।

ଶ୍ରୀକୃଷ୍ଣ—ନିୟମ କରିଛି ମୁଁ ହସ୍ତରେ ଲେଖିଦେଇ
ରାଧା ବିନୁ ମାଧବର ପ୍ରିୟ କେହି ନାହିଁ ।
ଏହା ଲଂଘିବି କେମନ୍ତେ ।
ଜାଣିମାରେ ଆସି ନପାରିଛି ଦୋଷ ଏତେ ॥

ବୃନ୍ଦା—ଏପରି ଦରିଦ୍ରାନାରୀ ବ୍ରଜେ କିଏ ଥିଲ
କୃଷ୍ଣ ତୁମ୍ଭ ଚନ୍ଦ୍ରମୁଖ ନିଗୂଢେ ଚୁମ୍ବିଲା ।
ଅତି ବିରସ ବଦନ
କଳା ପଡି ଦିଶଇ ଅଧିକ କୃଷ୍ଣବର୍ଣ୍ଣ ॥

ଶ୍ରୀକୃଷ୍ଣ—ବିଷ୍ଣୁ ଅଧୀନ ଜଗତ ଭକ୍ତାଧୀନ ହରି ।
ରାଧାର ଅଧୀନ କୃଷ୍ଣ ସଦା ଆଜ୍ଞାକାରୀ ॥
କରି ସଙ୍କେତ ଭଞ୍ଜନ
ରାସେଶ୍ୱରୀ ଭୟେ ମୋର ବିରସ ବଦନ ॥

ରାଧା—"କେଉଁ ଅଭାଗିନୀ ଭାଗ୍ୟେ ଏ ସୌଭାଗ୍ୟ ଥିଲା !
ସିନ୍ଦୂର ମୋହିନୀ ରାଧା ଠାରୁ ଭାଗ ନେଲା ॥
ଗାଢେ କରି ଆଲିଙ୍ଗନ,
ଶ୍ରୀବକ୍ଷ ଚିହ୍ନ ଲଭାଇ ଦେଲା ଚୂଡ଼ି ଚିହ୍ନ ।"

ଶ୍ରୀକୃଷ୍ଣ—"ଶ୍ରୀମତୀ ଚରଣ ବିନୁ ପରିତ୍ରାଣ ନାହିଁ ।
ନିର୍ଦ୍ଦୋଷକୁ ଦୋଷୀ କର ଦାସକୁ କମ୍ପାଇ,
ଅନୁତାପେ ଥିଲି ଶୋଇ,
ଚୂଡ଼ି ଚିହ୍ନ ନୁହେଁ ମୋଉଦ୍ଧାର ଚିହ୍ନ ଏହି ।"

ବୃନ୍ଦା—"ଉଚ ଫୁସ ହୋଇ ଛୁ ଛୁ ନାଚ ସ୍ତ୍ରୀଶି ଭଜ
ଶ୍ରୀକରେ ଲାଗିଛି କାହା କୁଚ କୁମ୍ଭ ରଜ ।
ପୀତାମ୍ବର ପରିଧାନ,
ପାଲଟାଇ ଦେଇଛି କେ ଏ ନୀଳ ବସନ ।"

ଶ୍ରୀକୃଷ୍ଣ—"ଜନ୍ମ ଶନ ହେଲାରୁ ଏ ଦଶା ପ୍ରତିକାର,
କୁଙ୍କୁମ ରଞ୍ଜିତ ପରିଧାନ ନୀଳାମ୍ବର ।
ସେହି ସିନ୍ଦୂର ଚନ୍ଦନ,
କରେ ଲାଗି ଅଛି ଦେଖ ରମଣୀ ରତନ ।"

ବୃନ୍ଦା—"ତମାଳ ଶ୍ୟାମଳ ତନୁ ଝରି ଶ୍ରମ ଝାଳେ
ତର ତର ହୋଇ ଝର ଝର ଶ୍ୱାସ ଚଳେ
ଶିରେ ଶିଖୀ ପୁଚ୍ଛ ଚୂଡ଼ା,
କୁହ, କମ୍ପାଇ ଭାଙ୍ଗିଛି କିଏ ପଦ୍ମ ବେଢ଼ା ॥"

ଶ୍ରୀକୃଷ୍ଣ—"ବାଳା ବୋଲା ବଳିବାରୁ ଶୀଘ୍ର ଆସୁ ଥିଲି
ବାନ୍ଧବୀରେ ମାଧବୀଙ୍କ ହାବୋଡ଼ି ପଡ଼ିଲି ।
ଲତା ଲଳିତ ଲୁଣ୍ଠନେ,
ବାଙ୍କି ଭାଙ୍ଗି ଅଛି ଚୂଡ଼ା ଚନ୍ଦ୍ରିକା ଦକ୍ଷିଣେ ।"

ବୃନ୍ଦା—"ବନମାଳୀ ହୃଦବନମାଳ ଶ୍ଳଥ ହୋଇ
ଖସିପଡ଼ି ପଛକୁ ଲମ୍ବିଛି କାହିଁ ପାଇଁ
ଶିରେ ଗୋରଚନା ଚିତା,
ବିଛିନ୍ନ ହୋଇ ଲଭିଛି ବାଙ୍କି କା ଭ୍ରୂଲତା ।"

ଶ୍ରୀକୃଷ୍ଣ—"ଚନ୍ଦ୍ରାଳୟେ ବାହୁଲେ ମୁଁ ଉଠନ୍ତେ ଚଅଁକି
ବଳରାମ ଶୋଇଥିଲେ କର ଭର ଦେଇ
ପରକ୍ଷଣେ ଚହକିଲା
ଅପସର ଆପଣେ ଛୁଡ଼ିଲା ବନମାଳା ।"

ବୃନ୍ଦା—'ବ୍ରଜଚନ୍ଦ୍ର ହେ ଚନ୍ଦ୍ର ମଲ୍ଲୀହାର କାର
ତାମ୍ବୁଲ ବୋଳ ଦେଇଛ ଶ୍ରୀପିଣ୍ଡ ଗଣ୍ଡର
କେଉଁ ନାଗରୀ ପରଶେ
ମନୋହର ଚନ୍ଦ୍ରମାଳା ମହ ମହ ବାସେ ।'

ଶ୍ରୀକୃଷ୍ଣ—କ୍ରୀଡା କରି ସୁଦାମ ସୁବଳ ପରିହାସେ
ଚନ୍ଦ୍ର ମଲ୍ଲୀ ହାର ହୃଦେ ଦେଇଛନ୍ତି ବାସେ
ନୋହେ ତାମ୍ବୁଲ ବୋଳ ସେ
ଗୈରିକ ଚର୍ଚ୍ଚିଛନ୍ତି ନଟବର ବେଶେ ।

ବୃନ୍ଦା—ଦେଖ ଦେଖ ମୋହନ ହେ ତୁମ୍ଭ ପାଦପଦ୍ମେ
ଦାସୀ ପଦ କେ ଲେଖିଛ ଚନ୍ଦ୍ରାବଳୀ ନାମେ
ଅଲକ୍ଷ୍ମୀକ ଲକ୍ଷ୍ମୀଭାବେ
କୁହ ଶ୍ୟାମ ଶ୍ରୀମନ୍ତ ପଦ ପାଇଲ କେବେ ।

ଶ୍ରୀକୃଷ୍ଣ—କୁମାର ପୂର୍ଣ୍ଣିମା ପର୍ବ ଉତ୍ସବରେ ଜାତ
ଲକ୍ଷେ ଚନ୍ଦ୍ରାବଳୀ ନଖେ ଲେଖିଛି ନାପିତ
ଚନ୍ଦ୍ରାବଳୀ ଛନ୍ଦର ହେ
ଆବଳୀ ଆକାର ରାକା ପୂର୍ଣ୍ଣ ଚନ୍ଦ୍ର ବୁଝେଁ ।

ବୃନ୍ଦା—ପଦ୍ମିନୀ ମଧୁର ମଧୁ ଛାଡ଼ି ମଧୁକର
କୁଟଜ ଚୁମ୍ବିଲ ପ୍ରାୟେ ହେଲ ଏ ବେଭାର
ଅହେ ରସିକ ନାଗର

ଏହାପରେ ଷୋଡ଼ଶ ଛାନ୍ଦରେ ନାଟ୍ୟକାର ସ୍ୱର୍ଗତ ଜଗନ୍ନାଥ ପାଣି ହଟନାଗର ଶ୍ରୀକୃଷ୍ଣଙ୍କ ପ୍ରତି କେତେଗୁଡ଼ିଏ ବକ୍ରୋକ୍ତିପୂର୍ଣ୍ଣ ସଂଳାପ ସଖୀ ବୃନ୍ଦା ମୁଖରେ ସଂଯୋଜନା କରିଛନ୍ତି । ଯଥା:—

ବୃନ୍ଦା—ଜଗତ ପତି ହୋଇ ଛ ଛ ଏଡ଼େ ହୀନମତି ।
ଗାନ୍ଧର୍ବୀ ରତନ ରାଧା ବିପୁର ମୋହନ
ତାକୁ ଛାଡ଼ି ବାହୁରିଲ ପଥ କଙ୍ଗାଳିନୀ ।।

କାଞ୍ଚନ ପ୍ରତିମା ଛାଡ଼ି କାଚରେ ମଜ୍ଜିଲ ।
ପଦ୍ମ ପ୍ରେମ ମଧୁ ଛାଡ଼ି ପଲାଶ ଚୁମ୍ବିଲ ॥
ଧିକ ଧିକ ଶ୍ୟାମ ତୁମ୍ଭ ପ୍ରୀତି ଧିକ ଧିକ ।
ଧିକ ତୁମ୍ଭ ଉପାସନା କରେ ଯେଉଁ ଧିକ ॥
କୋଟି ବ୍ରହ୍ମାଣ୍ଡରେ ସାର ଯେଉଁ ରାଧେଶ୍ୱରୀ ।
ସନ୍ତାପ ସାଗରେ ଭାସେ ତୁମ୍ଭ ଆଶ୍ରାକରି ॥
ଅସତ୍ୟ ହିଂସ୍ରକ କାମ କ୍ରୋଧ ଲୋଭ ମୋହ ।
ତୁମ୍ଭ ଠାରୁ ବଳିଆର ଅଛି କିଏ କୁହ ॥
କାମ ବଶେ ବାମ ବେଶେ ବୃନ୍ଦାକୁ ହରିଲ ।
ବାମନ ବେଶେ ବଳିକୁ ପାତାଳେ ଚାପିଲ ॥
ଲୋଭେ ବସ୍ତ୍ର ହରିକଲ ଦଧି ଦୁଗ୍ଧ ଚୋରି ।
ନାମ ଗୋପୀନାଥ ବ୍ରଜାଙ୍ଗନା ଚିତ୍ତ ହରି ॥
କ୍ରୋଧେ ଶଙ୍ଖାସୁର ମାରି ଗୋହତ୍ୟା ଅର୍ଜିଲ ।
ମାୟା ମୋହ ଲଗାଇ ରାଧାକୁ ନଷ୍ଟକଲ ॥
ଏଡ଼େ ନିଷ୍ଠୁର ପୁତନା ଦେଉଁ ଦେଉ କ୍ଷୀର ।
ଅଜନ୍ମ ନାରୀ ମାରଣ ଖ୍ୟାତିଟି ତୁମ୍ଭର ॥
ଯୁଗଳ ମନ୍ତ୍ର ସାମନେ ଯେବେ ବ୍ରଜନାରୀ ।
ନାଥ ଯାଅ ତୁମ୍ଭ ମୁଖ ନଚାହିଁବୁ ହରି ॥
ମୟୂର ମୁକୁଟ ପୀତାମ୍ବର ନପେନ୍ଧିବ ।
ରାଧା ବୋଲି ଡ଼ାକିଲେ ମୁରଲୀ ଭାଙ୍ଗିଯିବ ॥

ସେହିପରି ସପ୍ତଦଶ ଛାନ୍ଦରେ ମଧ୍ୟ ମାୟାଧର ଶ୍ରୀକୃଷ୍ଣ ମାୟାର ବଳୟ ମଧ୍ୟରେ ସମସ୍ତ ପ୍ରତ୍ୟେକୁ ଦୃଷ୍ଟିରଖି ଶ୍ରୀରାଧାଙ୍କ ସାନ୍ନିଧ ନିମନ୍ତେ ପ୍ରିୟ ଦୂତୀ ବୃନ୍ଦାବତୀଙ୍କୁ ବିନତୀ କରି କହୁଛନ୍ତି—

"ଅଗୋ ପ୍ରିୟ ଦୂତୀ ଯେନ ମୋ ବିନତି
ହାଙ୍ଗତରେ ଯେନଯାଅ ।
ମାନିନୀ ରତନ ରାଧା ପାଶେ ଯାଇ
ବାରେ ମୋ ଦୁଃଖ ଜଣାଅ ।
ଗୋ ସହି ।
ତୋହ ବିନୁ ଥାହା କେହ ନାହିଁ ।
ପ୍ରାଣ ରଖ ପ୍ରାଣ ପ୍ରିୟା ଦେଇ ।
ଦୟାମୟି ବିନୁ ଗତି କାହିଁ ॥

ଷୋଡ଼ଶ ଛାନ୍ଦରେ ବୃନ୍ଦା ଓ ଶ୍ରୀକୃଷ୍ଣଙ୍କ ଆଲାପମାନ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ହୋଇ ପାରିଛି ।

ବୃନ୍ଦା—ହେ ଯୋଗୀନ୍ଦ୍ରବର

କାହିଁ ନିବାସ କିସ ନାମ ତୁମ୍ଭର ।

ଶ୍ରୀକୃଷ୍ଣ— × କାଶୀ କ୍ଷେତ୍ରେ ମୋ ଘର

ଫୁଲ ମନ୍ତ୍ର ମାଗି ହରିହରର

ଗୋ ନାଗଶ୍ରୀବର

ରାଧାନାଥ ମୋ ନାମ ଯୋଗୀ ଈଶ୍ୱର ।

ବୃନ୍ଦା—କି କାର୍ଯ୍ୟେ ବିଜେ ଏହି ବରଜ ଧାମେ

କି ସୁଖ ଅଛି ଏହି ଦୁଃଖ ସଦନେ

ହେ ଯୋଗୀନ୍ଦ୍ର ବର

ତୀର୍ଥ ଛାଡ଼ିଣ କିମ୍ପା ଭ୍ରମ ବ୍ୟର୍ଥର ॥

ଅଷ୍ଟାଦଶ ଛାନ୍ଦରେ ଶ୍ରୀକୃଷ୍ଣ ରାଧାଙ୍କ ପାଦ ତଳେ ପଡ଼ି ଥିବାର ଦେଖି ସଖୀ ଚନ୍ଦ୍ରରେଖା କୁପିତ ହୋଇ ପଚାରିଛନ୍ତି—

× × × ×

ପତିତପାବନ ହେ ପଡ଼ିଛ କି ପାପରେ

କେ ଦେଲା ଏ ପ୍ରାୟଶ୍ଚିତ୍ତ ବିଧାନ ତୁମ୍ଭଙ୍କୁ ।

ଧୂଳିରେ ଲୋଟାଅ କିମ୍ପା ମର୍କତ ପଣିକୁ ॥

କିଅବା ତବ ପିତା ନନ୍ଦ ଭଲ ମନ୍ଦ ହେଲେ ।

କିଅବା କୁ ଭାଷା ଦୋଷେ ଯଶୋଦା ମାଇଲେ ॥

ଗୃହ କର କି ହରିକି ଅର୍ଜିଲ ଦୋଷ ବାଧା ।

କିବା ମାନ କରିଛନ୍ତି ରାସେଶ୍ୱରୀ ରାଧା ॥

ଚନ୍ଦ୍ରରେଖାଙ୍କର ଏଭଳି ଉକ୍ତିରେ ଆଉ ଟିକିଏ ତାଛଲ୍ୟ କରି ସଖୀ ବୃନ୍ଦାବତୀ କହନ୍ତି—

× × ମାନ କରିଛନ୍ତି ପ୍ୟାରୀ ।

ସଙ୍କେତ କରିଣ କାଲି ନଇଲେ ଶ୍ରୀହରି ॥

ଚନ୍ଦ୍ରରେଖା—ଏ ସାମାନ୍ୟ କଥା ପାଇଁ ଏତେ ମାନ ଧରୁ ।

ମାଧବ କି ହେଲେ ଏତେ ପର ରାଧା ଠାରୁ ॥

କମଳା ହୃଦସ୍ଥ ନନ୍ଦ ରତନ ମାଳକୁ ।

ଯତନ ନ କରି ତୁ ଯା ଫିଙ୍ଗିଲୁ ତଳକୁ ॥

× × ×

ଅତି ମାନେ ମାନଧାତା ମାନରେ ଦୁର୍ଯ୍ୟୋଧନ ।
ନଷ୍ଟ ହେଲା ଅତି ଦାନେ ବଳିରାଜା ଧନ ॥
ଅତିଶଯ୍ୟ ମାନ କଲେ ହୁଏ ଅପମାନ ।
ବୋଲେ ଜଗନ୍ନାଥ ଉଠ ତେଜ ଅଭିମାନ ॥ (୧୩)

ଜନବଂଶ ଗ୍ରନ୍ଥରେ ଚନ୍ଦ୍ରରେଖାର ସାନ୍ତ୍ୱନା ମୂଳକ ବାଣୀରେ ସାମାନ୍ୟ ଅଶ୍ୱସ୍ତ ହୋଇ ଶ୍ରୀକୃଷ୍ଣ ଧୂଳିରୁ ଉଠି ଅତ୍ୟନ୍ତ ଦୁଃଖ ମନରେ ଦୂତୀକୁ ଅନୁରୋଧ କରନ୍ତି । ଏଠାରେ ଦୂତୀ ଓ ଶ୍ରୀକୃଷ୍ଣଙ୍କ ଉକ୍ତି ପ୍ରତ୍ୟୁକ୍ତି ନାଟ୍ୟକାର ସ୍ୱର୍ଗତ ପାଣିଙ୍କ ଲେଖନୀରେ ଅତ୍ୟନ୍ତ ସଜୀବ ହୋଇ ଉଠିଛି—

ମୟୂର ଚନ୍ଦ୍ରିକା ରାଧା ନାମ ଲେଖା ମୁକୁଟ ବିରାଜେ ଶିରେ ଯାର,
ସେହି କି କପାଳେ ଥିଲା ଏହି କାଳେ ଲଲାଟେ ବହିବ ଜଟା ଭାର ।
ଗଙ୍ଗା ପାଦୁଁ ନେଇ, ମସ୍ତକେ ନେବ କାହିଁ ପାଇଁ ।

ଯେଉଁ ବଂଶୀ ଧ୍ୱନି ବିରଜ କାମିନୀ ଚିତ୍ତ ମୋହେ କରେ କାଶ୍ଚିତରେ,
ତାକୁ ପରିହରି ଦେବ କିପରି ଡମ୍ବରୁ ଶିଙ୍ଗାକୁ ସେ ଶ୍ରୀକରେ ।
ସତ ଗୁଣ ହରି, ତମ ହେଲେ ଶିବ ସର୍ବ ସାର । (୧୪)

ଏକ ବଂଶ ଗ୍ରନ୍ଥରେ ବିଶାଖା ମୁଖରେ ସଂଳାପ ସ୍ୱର୍ଗତ
ପାଣିଙ୍କ ଲେଖନୀରେ ଅତ୍ୟନ୍ତ କମନୀୟ ହୋଇ ଫୁଟି ଉଠିଛି ।

ଶ୍ରୀକୃଷ୍ଣଙ୍କର ଯୋଗୀନ୍ଦ୍ର ରୂପକୁ ସେ ଭଲ ଭାବରେ ଚିହ୍ନି ହସ ହସ ହୋଇ କହି ଉଠିଛି—

× × ×

ଅପୂର୍ବ ଯୋଗୀନ୍ଦ୍ର ହେ ଆଇଲ ତୁମ୍ଭେ କାହିଁ,
କେ ଦେଲା ଏ ଯୋଗ ଦୀକ୍ଷା ଶିକ୍ଷା ତୁମ୍ଭେ କଲ ।
ନବୀନ ବୟସେ କାହା ଲାଗି ଯୋଗୀ ହେଲ ।
ଦିନେ ଦେଖିଥିଲି ମୁଁ ତୁମ୍ଭକୁ ଏ ଗୋପରେ ।
ଭୂତ ମନ୍ତ୍ର ଝାଡୁ ଥିଲ ରାଧା ଶ୍ରୀ ଅଙ୍ଗରେ
ଆଉ ଦିନେ ଦେଖିଥିଲି ଯମୁନା କୂଳରେ ।
ହାଟ ସାଧୁ ଥିଲ ବସି କଦମ୍ବ ମୂଳରେ ।
ମନରେ ଅଛିନା ଦିନେ ଜଳ କେଳି ଠାରେ
ବସ୍ତ୍ର ଚୋରି କରି ନେଲ କଦମ୍ବ ମୂଳରେ ।
ଜାଣି ନଜାଣି କହୁଛ ଅନୁଭବ ପରି,
ତୁମ୍ଭ ନାମ ପରା ହେ ମୋହନ ବଂଶୀ ଧାରୀ ।

ଦଣ୍ଡ ଧାରୀ ହୋଇ ହେଲ ଭଣ୍ଡ ଯୋଗୀ ବେଶ ।
ଲୁଚ୍ଛଇଲେ ଲୁଚବ କି କଳା ଚନ୍ଦ୍ର ହସ ।
ହୃଦେ ଭୃଗୁ ଚିହ୍ନ ପାଦେ ଧ୍ୱଜ-ବଜ୍ରାଙ୍କୁଶ
ଝଣ୍ଟେ ଦୂରୁ ଚିହ୍ନିଲେ ଅନ୍ଧଲୁହୋ ଏ ଦୃଶ ।

ଶ୍ରୀକୃଷ୍ଣ—ଗୋ ପ୍ରିୟ ସଖି !
ଗଲା ଗଲା ପ୍ରାଣ କର ତାହି ।
ପ୍ରୀତି ଅନୁରାଗି ରାଧା ଲାଗି ଯୋଗୀ
ହୋଇବ ନିଶ୍ଚୟ ଆଜ ମୁହିଁ ।
ସଜାଅ ଯୋଗେନ୍ଦ୍ର ସ୍ୱରୂପ ଯୋଗେନ୍ଦ୍ର
ମାନିନୀ ମାନ ଭଙ୍ଗିବା ପାଇଁ ॥
ଗୋ ପ୍ରିୟ ସଖି ।
ତୋ ବିନୁ କେ ମୋର ସାହା ନାହିଁ !

ବୃନ୍ଦାବତୀ— × × କି କହୁଲ ଅହେ
ବିଶେଷେ ଐଶ୍ୱର୍ଯ୍ୟ ସୁଖ ଦାୟୀ ।
ମଦନ ମୋହନ ସ୍ୱରୂପକୁ ପରି
ଯୋଗୀ ବେଶ ସାଜି ଦେବ ମୁହିଁ ।
ଆହେ ଚନ୍ଦ୍ରାମଣି,
ଏ ଜୀବନ ଗଲା ଏହା ଶୁଣି ।
ଜଳଦ ସୁନ୍ଦର ଅଙ୍ଗେ ପୀତାମ୍ବର
ବିଜୁଳି ପରିଏ ଝଟକଇ
ତାକୁ ପାଲଟାଇ ବକଳ ପିନ୍ଧାଇ
କେମନ୍ତ ହେବ ସହିବ ଦେହି ।
ଆହେ ବ୍ରଜେଶ୍ୱର,
ଲାଜ ଛାଡ଼ି ହେବ ଦିଗମ୍ବର ।
× ×
ବୃଷଭାନୁ ସୁତା ରାଧା ହାତ ଗୁନ୍ଥା
ବନମାଳ ଲମ୍ବେ ଯେଉଁ ଗଳେ
କପର ରୁଦ୍ରାକ୍ଷ ଅସ୍ଥିମାଳ ଶଙ୍ଖ,
ଘେନାଇଁ ଦେବ ସେ କକ୍ଷ ସ୍ଥଳେ ।
ଆହେ ହେମ ଦେହା,
ଆହା ଆହା ଏହା କହୁ ଯାହା ।

ଶ୍ରୀକୃଷ୍ଣ—ଶ୍ରୀରାଧା ରାଜଧାନୀ ଶୁଣିଣ ମୁହିଁ
ଆସିଛି ଭିକ୍ଷା କିଛି ନେବାର ପାଇଁ ।
ଗୋ ନାଗରୀ ବର,
ତୁମ୍ଭକୁ ଜଣାଇଣ ବିଦାୟ କର ।

ବୃନ୍ଦା—ଯେନ ଯେନ ଏ ଭିକ୍ଷା ଘନ ସୁନ୍ଦର
ତୁମ୍ଭ ପାଇଁ ଆଣିଛୁ ସଂସାର ସାର
ହେ ଯୋଗୀନ୍ଦ୍ର ବର,
ଗୃହୀର ଧର୍ମ ଏ ଅଟଇ ବେଢ଼ର । ”

ଶ୍ରୀକୃଷ୍ଣ—ରାଜ ନନ୍ଦନୀ ପୁର ପରତେ ପାଇ
ଆଶା କରି ଆସିଛି ଆଶାର୍ଥୀ ହୋଇ
ଗୋ ନାଗରୀ ବର
ତାଙ୍କ ଶ୍ରୀହସ୍ତ ଭିକ୍ଷା ବାଞ୍ଛା ମୋହର ।

ବୃନ୍ଦା—ଯାହା ଲାଗି ଥିଲା ସେ ମାନଗର୍ବ
ସେ ହେଲେ ପର ଏବେ ନାହିଁ ସେ ଭାବ ।
ହେ ଯୋଗୀନ୍ଦ୍ର ବର
ଦୁଃଖରେ ଛନ୍ତି ସୁଖ ନାହିଁ ମନର ॥

ଶ୍ରୀକୃଷ୍ଣ—ଯେଉଁ ରାଧା ତ୍ରିପୁରେ ଐଶ୍ୱର୍ଯ୍ୟ ଦାୟୀ
କି ଦୁଃଖ ହେଲା ତାଙ୍କୁ ମୋହର ପାଇଁ
ଗୋ ନାଗରୀ ବର
ଯାହା ପ୍ରେମେ ବଶ ଛନ୍ତି ଶ୍ରୀଧର ॥

ବୃନ୍ଦା—ଗଲଣି ପୂର୍ବ କଥା ନାହିଁ ତ ଏବେ
ଶୋକ ସାଗରେ ଭସେ ଶ୍ୟାମ ଅଭାବେ ।
ହେ ଯୋଗୀନ୍ଦ୍ର ବର
ଯାଚକ ହୋଇ କି ପ୍ରତିଜ୍ଞା ତୁମ୍ଭର ॥

ଶ୍ରୀକୃଷ୍ଣ—ଠାକୁରାଣୀଙ୍କୁ ଯାଇ ଜଣାଅ ଦ୍ୱାରୀ
ତାଙ୍କ ପାଇଁ ଆସିଛି ପ୍ରେମ ଭିକାରୀ
ଗୋ ନାଗରୀ ବର
ଜଗନ୍ନାଥ କହେ କି ଅଛି ମନର ॥

ପଞ୍ଚବିଂଶ ଛାନ୍ଦରେ ଶ୍ରୀକୃଷ୍ଣ ଓ ରାଧାଙ୍କ ମୁଖରେ ସମ୍ବୋଧିତ ସଂଳାପମାନ ନାଟକର

ଉକ୍ତିଂ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ନାଟ୍ୟକାରଙ୍କ ଅପୂର୍ବ ସଂଳାପ ଶୈଳୀର ପରିଚୟ ପ୍ରଦାନ କରିଅଛୁ । ଯଥା—

ଶ୍ରୀକୃଷ୍ଣ—କର କର ମତ୍ୟ କର କରକ ରଦନି
ଯାହା ମୁଁ ମାଗିବ ଦେବ ଐଶ୍ୱର୍ଯ୍ୟ ଦାୟିନି
ଦୀନଜନରେ, ଦୟାମୟି ଦୟାବନ୍ଧ ହୃଦରେ ।

ଶ୍ରୀରାଧା—ଗୁଡ ଗୁଡ଼ ଯୋଗୀନ୍ଦ୍ର ସ୍ୱରୂପ ଯୋଗୀଶ୍ୱର
ଯାହା ମାଗିବ ତାହା ଦେବ ଏହି ସତ୍ୟ ମୋର
ନକ୍ଷା ପ୍ରମାଣ, ମାଗିଲେ ଦେବ ମୁଁ ପଞ୍ଚ ପରାଣ ।

ଶ୍ରୀକୃଷ୍ଣ—ମାଗୁଅଛୁ ମାନ ଭିକ୍ଷା, ଦିଅ ରାଧେଶ୍ୱରୀ
ଆସିଅଛୁ ଆଶା କରି ମୁଁ ପ୍ରେମ ଭିଖାରୀ

× × ଇତ୍ୟାଦି ।

ସୁତରାଂ ସଳାପ ସଂଯୋଜନାରେ ଜଗନ୍ନାଥ ପାଣିଙ୍କର ଲୋକପ୍ରିୟତାର ପଟାନ୍ତର ନାହିଁ । ଶାଣିତ ବାକ୍ୟ ପ୍ରୟୋଗରେ ତାଙ୍କ ଲେଖନୀ ଯେପରି ତୀକ୍ଷ୍ଣ, ସ୍ନେହ, ପ୍ରେମ, ସମ୍ଭାଷଣରେ ତଥା ଲଳିତ ପଦାବଳୀ ପ୍ରୟୋଗରେ ସେହିପରି ଭାସ୍ୱର ।

## ଚରିତ୍ରର ବିକାଶ :-

ଚରିତ୍ର ଚିତ୍ରଣ କରିବାରେ ନାଟ୍ୟକାର ସ୍ୱର୍ଗତ ପାଣି ଜଣେ କୁଶଳୀ ଶିଳ୍ପୀ । ଆଲୋଚ୍ୟ ମାନଭଞ୍ଜନ ଗୀତିନାଟ୍ୟରେ ଚରିତ୍ର ଚିତ୍ରଣ କରିବାରେ ବିଶେଷ କିଛି ଚମତ୍କାରିତା ଦେଖାଇବାରେ ବିଶେଷ ସୁଯୋଗ ପାଇ ନଥିଲେହେଁ; ତଥାପି ସେହି ସୀମିତ ପରିସର ମଧ୍ୟରେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ଚରିତ୍ରକୁ ଯେପରି ଆଦର୍ଶ ପ୍ରେମର ଏକ ମୂର୍ତ୍ତିମନ୍ତ ନାୟକ ଓ ନାୟିକା ଭୂମିକାରେ ଗଢି ତୋଳିଛନ୍ତି, ସେହିପରି ପାର୍ଶ୍ୱ ଚରିତ୍ର ଭାବେ ବିଶାଖା, ଚନ୍ଦ୍ରାବଳୀ ବୃନ୍ଦାବତୀ ଓ ଚିତ୍ରରେଖା ଆଦିଙ୍କ ଚରିତ୍ର ମଧ୍ୟ ଯଥାଯଥଭାବରେ ଅଙ୍କନ କରିଛନ୍ତି । ଆଂଶିକ ଖଳନାୟିକା ଭାବେ କୁଟିଳାକୁ ମଧ୍ୟ ଯଥାର୍ଥ ଚିତ୍ରଣ କରିବାରେ ସେ କାର୍ପଣ୍ୟ କରିନାହାନ୍ତି, ତଥାପି କୁଟିଳା ଚରିତ୍ରକୁ ଆଉ ଟିକିଏ ପରିବର୍ଦ୍ଧିତ କରି ଆଉ ଅଳ୍ପ କେତୋଟି ପୁରୁଷ ଚରିତ୍ରର ସମାବେଶ କରାଇ ନାଟକର ନାଟକୀୟତାକୁ ଅଧିକ ପ୍ରସାରିତ କରିପାରି ଥାଆନ୍ତେ । କିନ୍ତୁ ଲୀଳାର ଧର୍ମ ଅନୁସାରେ ନୃତ୍ୟ, ଗୀତ ଓ ଅଭିନୟ ମାଧ୍ୟମରେ କୃଷ୍ଣ ଭକ୍ତି ରସର ଯଥାର୍ଥ ପରିବେଷଣକୁ ପ୍ରାଧାନ୍ୟ ଦେଇ ସେ ତତ୍କାଳୀନ ସମାଜର ଜନଗଣଙ୍କ ନିକଟରେ ଲୋକପ୍ରିୟତା ଅର୍ଜନ କରିବାକୁ ବୋଧହୁଏ ପ୍ରୟାସୀ ହୋଇ ଅଧିକ ଚରିତ୍ର ସମାବେଶ ନିମନ୍ତେ ଆବଶ୍ୟକତା ଅନୁଭବ

କରିନାହାନ୍ତି । ତେଣୁ 'ମାନଭଞ୍ଜନ'ର ସଙ୍ଖ୍ୟୋଜିତ ଚରିତ ଗୁଡ଼ିକରେ ନାଟ୍ୟକାରଙ୍କର ନାଟ୍ୟ ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିପାଦିତ ହୁଏ ।

## ମାନଭଞ୍ଜନରେ କୃଷ୍ଣଭକ୍ତିପ୍ରେମ :

'ମାନଭଞ୍ଜନ' ତତ୍କାଳୀନ କୃଷ୍ଣଭକ୍ତି ଲୀଳାର ଅନ୍ତର୍ଗତ ବୋଲି ପୂର୍ବରୁ ଅଭିହିତ ହୋଇଯାଇଅଛି । କୃଷ୍ଣ ପ୍ରେମରେ ରାଧା ନିମଜ୍ଜିତା ହୋଇଛନ୍ତି । ଏଥିରେ ଦେହଜ ପ୍ରେମ ଯେତିକି ବର୍ଣ୍ଣିତ ତା'ର ଅନ୍ତରାଳରେ ବିଭୁ ପ୍ରେମ ଅଧିକ ମାତ୍ରାରେ ପ୍ରକଟିତ । ଦୂତୀ ବୃନ୍ଦାବତୀ ଶ୍ରୀକୃଷ୍ଣଙ୍କ ଠାରୁ ବାର୍ତ୍ତା ନେଇ ଫେରିବା ପରେ ରାଧା ଦୂତୀଙ୍କୁ ଯେପରିଭାବେ ଶ୍ରୀକୃଷ୍ଣଙ୍କ ସମ୍ପର୍କରେ କୁଶଳ ଜିଜ୍ଞାସା କରୁଛନ୍ତି; ତହିଁରେ ତାଙ୍କର ସ୍ୱଚ୍ଛ ସୁବିଶାଳ ପ୍ରେମର ଇଙ୍ଗିତ ପ୍ରତିପାଦିତ ହୁଏ । ଯଥା:—

'କହିରେ ବାନ୍ଧବ କେମନ୍ତେ ଗଲୁ
ସେ ନାଗର ବର କାହିଁ ଭେଟିଲୁ
ସେ ବ୍ରଜ କିଶୋର, କହି କି କରୁଥିଲେ ଚିତ୍ତ ଚୋର
ମୋର କଷ୍ଟ ଯାକ କୃପାନିଧିଙ୍କି ଜଣାଇ ମଣାଇ କହିଲୁଟିକି
ଶୁଣିକି କହିଲେ ଶ୍ୟାମସୁନ୍ଦର ମୋହିଠାରେ କେତେ ସ୍ନେହ ତାଙ୍କର
କହି କହି ଆଜ, କି ସନମାନ କଲେ ଦେବରାଜ ।
କହି କି କହିଲେ ଆଗେ ସେ ତୋତେ
ଜଳଦ ସୁନ୍ଦର ଦେଖିଲି ମାତ୍ରେ
ଆସିବାକୁ କହିଛନ୍ତି ନା ହରି
କହି କହି ଗୋ ବିଳମ୍ବ ନକରି
× × କହି କି ଦେଇ ଅଛନ୍ତି ସଙ୍କେତ ॥

ସେହିପରି ଚନ୍ଦ୍ରାବଳୀର ପ୍ରେମ ଓ ରତି ବିଳାସ ମଧ୍ୟରେ ବିଭୁ ପ୍ରେମର ସଙ୍କେତ ପରିଦୃଷ୍ଟ ହୁଏ । ରତିକ୍ରୀଡ଼ା ମଧ୍ୟରେ ଶ୍ରୀକୃଷ୍ଣ ମୁରଲୀଧରଙ୍କ ଐଶ୍ୱରିକ ସତ୍ତାରେ ହଜି ଯିବାକୁ ଚନ୍ଦ୍ରାବଳୀ ଗଭୀରଭାବେ ଆଶା ପୋଷଣ କରିଛି ଏବଂ ସେ ସେହି ରାଜିକର ସାନ୍ନିଧ୍ୟରେ ତା'ର ଜନ୍ମଜନ୍ମାନ୍ତର ଜୀବନକୁ ସାର୍ଥକ ମଣିଛି । ଏ ସମସ୍ତ ପ୍ରେମ ମୂଳରେ ସାଧାରଣ ଜନମାନସରେ ବିଭୁ ପ୍ରେମର ସତ୍ତା ଯେ ପ୍ରଚ୍ଛନ୍ନ ଭାବେ ପ୍ରସାରିତ ହୋଇ ପାରିଛି କହିବା ବାହୁଲ୍ୟମାତ୍ର । କୃଷ୍ଣ ପ୍ରେମରେ ଗଭୀର ବିଶ୍ୱାସୀ ନାଟ୍ୟକାର ସ୍ୱର୍ଗତ ପାଣି ଯେଉଁଠି ଟିକିଏ ମାତ୍ର ସୁଯୋଗ ପାଇଛନ୍ତି ସେଠାରେ ବିଭୁପ୍ରେମର ମହିମା ତଥା ବିଶ୍ୱ ପ୍ରେମର ସମ୍ମୋହନ ଅଭିପ୍ସାକୁ ବଳବତ୍ତର କରିବାକୁ ତିଳେମାତ୍ର ପଶ୍ଚାତ୍ପଦ ହୋଇ ନାହାନ୍ତି ।

## କଥାବସ୍ତୁରେ ନୂତନତା :

ପ୍ରଥମରୁ ଆଲୋଚିତ ହୋଇଛି ଯେ ଜୟଦେବଙ୍କ ଗୀତ ଗୋବିନ୍ଦ ଓ ଅଚ୍ୟୁତା ନନ୍ଦଙ୍କ ହରିବଂଶର କଥାବସ୍ତୁକୁ ଆଧାର କରି ଆଲୋଚ୍ୟ 'ମାନଭଞ୍ଜନ' ଗୀତାଭିନୟ ରଚନା କରିଥିଲେ ହେଁ ସେ ଅଭିନବ ପରିପାଟୀରେ କଥାବସ୍ତୁର କେତେକ ପରିବର୍ତ୍ତନ କରି ନିଜ ଶୈଳୀରେ ଅତ୍ୟନ୍ତ ସରସ ସୁନ୍ଦର ଓ ନାଟକୀୟତାର ପୁଟ ଦେଇ ରଚନା କରି ସ୍ୱକୀୟ ମୌଳିକତାର ପରିଚୟ ଦେଇଛନ୍ତି । ଦର୍ଶକମାନଙ୍କ ମନୋରଞ୍ଜନ ତଥା ନାଟକର ଉତ୍କର୍ଷ ନିମନ୍ତେ ଜଗନ୍ନାଥ ପାଣି ନିଶ୍ଚିତ ଭାବେ ଏହି ଉପାୟ ଅବଲମ୍ବନ କରିଛନ୍ତି । ହରିବଂଶର ମାନଭଞ୍ଜନ ସହିତ ଜଗନ୍ନାଥ ପାଣିଙ୍କ 'ମାନଭଞ୍ଜନ' ମଧ୍ୟରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ନନ୍ଦରାଣୀ ଯଶୋଦା ରାମ କୃଷ୍ଣଙ୍କୁ ନିରବରେ ନିଦ୍ରା ଯିବାକୁ ଉପଦେଶ ପ୍ରଦାନ କରନ୍ତେ ଶ୍ରୀକୃଷ୍ଣ ନିଦ୍ରାଯାଇଛନ୍ତି । ଇତ୍ୟବସରରେ ରାତ୍ରି ପାହିଯାଇଛି । ପ୍ରଭାତରୁ ପୁଣି ଧେନୁ ପଲ ନେଇ ବନକୁ ବାହାରିଛନ୍ତି ଶ୍ରୀକୃଷ୍ଣ । କୁଞ୍ଜବନରେ ଶ୍ରୀକୃଷ୍ଣଙ୍କ ବଂଶୀ ସ୍ୱନ ଶୁଣି ଗୋପାଙ୍ଗନାମାନେ ଆସି ପହଞ୍ଚିଛନ୍ତି; କିନ୍ତୁ ସେମାନଙ୍କ ମଧ୍ୟରେ ଶ୍ରୀରାଧାକୁ ନପାଇ ମ୍ରିୟମାଣ ହୋଇପଡ଼ିଛନ୍ତି ଓ ସେ ନଆସିବାର କାରଣ ଜିଜ୍ଞାସା କରନ୍ତେ ରାଧାଙ୍କ ପ୍ରିୟ ସଖୀ ବୃନ୍ଦାବତୀ ରାଧାଙ୍କ ଗୁମାନ କଥା ବର୍ଣ୍ଣନା କରି କହିଛନ୍ତି:—

ଆମ୍ଭେ କେମନ୍ତେ ଜାଣିବୁ ରାଧିକାର ମନ
କାଲି ବୃନ୍ଦାବତୀ ହେତୁ କରି ଅଭିମାନ ।
ମନ୍ଦିରରେ ଶୋଇଥିଲି ପଲଙ୍କ ଉପରେ
ବଡ କୋଧ ଜନ୍ମିଅଛି ତାହାଙ୍କ ମନରେ ॥

ହରିବଂଶରେ ଏପରି ବର୍ଣ୍ଣନା ରହିଥିବାବେଳେ ଜଗନ୍ନାଥ ପାଣିଙ୍କ ତୁଳୀରେ ତାହା ଭିନ୍ନରୂପ ଗ୍ରହଣ କରିଛି ଜଗନ୍ନାଥ ପାଣିଙ୍କ ରଚନାରେ ବସନ୍ତ ଋତୁରେ ରାଧାଙ୍କର କାମଭାବ ଉଦ୍ରେକ ହୋଇଛି ଓ ଶ୍ରୀକୃଷ୍ଣଙ୍କ ବିରହାନଳରେ ସେ ଦଗ୍ଧୀଭୂତ ହୋଇ ଦୂତୀକୁ ଶ୍ରୀକୃଷ୍ଣଙ୍କ ପାଖକୁ ପଠାଇଛନ୍ତି । ଶ୍ରୀକୃଷ୍ଣ ଅର୍ଦ୍ଧ ରାତ୍ରିକୁ ରାଧାଙ୍କ କେଳି କୁଞ୍ଜରେ ମିଳିତ ହେବାକୁ ପ୍ରତିଶ୍ରୁତି ଦେଇଛନ୍ତି । କିନ୍ତୁ ରାତ୍ରି ଅର୍ଦ୍ଧରେ ଆସି ଭ୍ରମ ବଶତଃ ଚନ୍ଦ୍ରାବଳୀ ପୁରରେ ପ୍ରବେଶ କରିଛନ୍ତି । ପୁଣି ଜଗନ୍ନାଥ ପାଣିଙ୍କ ସୃଷ୍ଟିରେ ରାଧା କେଳି କୁଞ୍ଜକୁ ବାହାରିବା ସମୟରେ କୁଟିଳାର ସମ୍ମୁଖୀନ ହୋଇ କୁଟିଳା ଦ୍ୱାରା ଭର୍ତ୍ସିତା ହେବା ହରିବଂଶରେ ଦେଖିବାକୁ ମିଳେନାହିଁ; ବରଂ ତାହା ଅନ୍ୟ ସମୟରେ ଭିନ୍ନ ଭାବରେ ବର୍ଣ୍ଣିତ ହୋଇଅଛି । ଶ୍ରୀରାଧା କୃଷ୍ଣଚନ୍ଦ୍ରଙ୍କ ସହ ମିଳିତ ହେବାପରେ ଚନ୍ଦ୍ରସେଣା ରାଧାରାଣୀଙ୍କୁ ନାନାଦି ତିରସ୍କାର କରିଛନ୍ତି ।

କେବଳ ଏତିକ ନୁହେଁ, ଅଧିକାଂଶ କ୍ଷେତ୍ରରେ ନାଟ୍ୟକାର ସ୍ୱର୍ଗତ ଜଗନ୍ନାଥ ପାଣି ସେହାକୁ ଭିନ୍ନ ରୂପରେ ନାଟକୀୟ କରି ନିଜସ୍ୱ କରି ଗଢ଼ି ତୋଳିଛନ୍ତି; ଯାହା ତାଙ୍କ ସ୍ୱକୀୟ ମୌଳିକତାର ପରିଚୟ ପ୍ରଦର୍ଶନ କରେ ।

ଏତଦ୍ ବ୍ୟତୀତ ଶ୍ରୀକୃଷ୍ଣ ଯୋଗୀନ୍ଦ୍ର ବେଶରେ ଯାଇ ଶ୍ରୀରାଧାଙ୍କ ପାଖରେ ଉପସ୍ଥିତ ହେବା ହରିବଂଶରେ ବର୍ଣ୍ଣିତ ହୋଇନାହିଁ । ହରିବଂଶରେ ଶ୍ରୀକୃଷ୍ଣ ରାଧାଙ୍କ ପାଖରେ ଉପସ୍ଥିତ ହୋଇ ରାଧିକାଙ୍କ ମାନଭଞ୍ଜନ କରିବା ଏବଂ ରାଧିକାଙ୍କ ପାଦ ପଦ୍ମରେ ପଡ଼ିବା ବର୍ଣ୍ଣିତ ହୋଇଅଛି । ଉଦାହରଣ ସ୍ୱରୂପ :—

ଏତେ ବୋଲି ଗଳାରୁ ସେ କାଢ଼ି ରତ୍ନମାଳ
ରାଧିକା ଗଳେ ଲମ୍ବାଇ ଦେଲେ ବନମାଳ ।
ବ୍ୟାକୁଳ ଚିତ୍ତେ ପାଦରେ ଦିଅନ୍ତି ନେଇ ଶିର
ରାଧିକା ବୋଇଲେ ତହୁଁ ଏମନ୍ତ ପ୍ରକାର ।।

ଅତଏବ ହରିବଂଶରୁ କଥା ବସ୍ତୁ ଗ୍ରହଣ କରି ସ୍ୱର୍ଗତ ଜଗନ୍ନାଥ ପାଣି ମାନଭଞ୍ଜନକୁ ଗୀତିନାଟ୍ୟ ରୂପ ଦେବାରେ ଅବଶ୍ୟକୀୟ କଥା ବସ୍ତୁର ପରିବର୍ତ୍ତନ ଏବଂ ଚରିତ୍ର ସମାବେଶ କରିବା ସଙ୍ଗେ ସଙ୍ଗେ ମଞ୍ଚ ପରିବେଷଣ ନିମନ୍ତେ ଜନସାଧାରଣଙ୍କ ଦ୍ୱାରା ଲୋକପ୍ରିୟତା ଅର୍ଜନ କରିବା ପାଇଁ ଯଥା ସାଧ୍ୟ ଚେଷ୍ଟା କରି ସଫଳ ହୋଇଛନ୍ତି ।

—※—

# ବାଲେଶ୍ୱର ଜିଲାର ଯାତ୍ରା

**ଅଧ୍ୟାପକ ବନମାଳୀ ମିଶ୍ର**

"ଓଡ଼ିଶାରେ ଊନବିଂଶ ଶତକରେ 'ନବଯାତ୍ରା ପରମ୍ପରାର ନିର୍ମାଣ'ରେ ବାଲେଶ୍ୱର ହିଁ ଅଗ୍ରଣୀ ହୋଇଥିଲା ।' (୧) ନଅଙ୍କ ଦୁର୍ଭିକ୍ଷ (୧୮୬୬) ପୂର୍ବରୁ ଓଡ଼ିଆ ଯାତ୍ରା ଏକ ଲୋକପ୍ରିୟ ନାଟ୍ୟାନୁଷ୍ଠାନ ରୂପେ ଓଡ଼ିଶାରେ ପ୍ରତିଷ୍ଠିତ ଥିଲା । ନଅଙ୍କ ଦୁର୍ଭିକ୍ଷ ଓଡ଼ିଆ ଜାତିର ଅର୍ଥନୈତିକ ଓ ନୈତିକ ମେରୁଦଣ୍ଡକୁ ଯେପରି ଭାଙ୍ଗି ଦେଇଥିଲା, ଓଡ଼ିଶାର କଳା, କୃଷି ଓ ସାହିତ୍ୟକୁ ସେହିପରି ଏକ ଅଚଳାୟତନ ମଧ୍ୟରେ ସ୍ଥାଣୁ କରି ଦେଇଥିଲା । ଦୁର୍ଭିକ୍ଷ ସମୟରେ ଓ ପରବର୍ତ୍ତୀ ଅଳ୍ପ କେତେ ବର୍ଷ ପାଇଁ ଯାତ୍ରାଭିନୟ ବନ୍ଦ ହୋଇଥିଲେ ମଧ୍ୟ ପୁନର୍ବାର ଓଡ଼ିଆ ଯାତ୍ରା ନୂତନ ରୂପରେ ଆତ୍ମପ୍ରକାଶ କଲା । ବସ୍ତୁତଃ ଯାତ୍ରାଭିନୟ ଓଡ଼ିଶାର ନିଜସ୍ୱ ଗଣନାଟ୍ୟକଳା ଏବଂ ବହୁ ପ୍ରାଚୀନ କାଳରୁ ତାହା ଚାଲିଆସିଅଛି ।

ଖ୍ରୀଷ୍ଟୀୟ ୧୮୭୫ ମସିହାରେ ଦୁର୍ଗାପୂଜା ସମୟରେ ବାଲେଶ୍ୱର ରାଜବାଟୀରେ ଯାତ୍ରାଭିନୟ ହୋଇଥିଲା । 'ସମ୍ବାଦ ବାହିକା' ରେ ସେ ସମ୍ପର୍କରେ ସମ୍ବାଦ ପ୍ରକାଶ ପାଇଥିଲା—"ଏ ବର୍ଷ ମେଦିନୀପୁର ଅଞ୍ଚଳରୁ ଚାରି ପାଞ୍ଚଦଳ ଯାତ୍ରାକାର ଆସିଥିଲେ ମାତ୍ର ବାଲେଶ୍ୱର ଓଡ଼ିଆମାନେ ନୂଆ ଶିଖି ଯେଉଁ ବଙ୍ଗଳାଯାତ୍ରା କରିଥିଲେ, ତାହା ସର୍ବୋତ୍କୃଷ୍ଟ ହୋଇଥିଲା । ଏମାନେ ବଙ୍ଗଳାଯାତ୍ରା ଯେରୂପ ଉତ୍ସାହର ସହିତ ଶିଖି ଅଛନ୍ତି, ସେହିପରି ନୂଆ ଧରଣର ଓଡ଼ିଆଯାତ୍ରା ଶିଖିଥିଲେ ବଡ଼ ସୁଖ ହୁଅନ୍ତା ।" (୨) ପୁନଶ୍ଚ ୧୮୭୬ ମସିହାରେ ପୂର୍ବ ବର୍ଷପରି ଦୁର୍ଗାପୂଜା ଉପଲକ୍ଷେ ବାଲେଶ୍ୱର ରାଜବାଟୀରେ ଯାତ୍ରାଭିନୟର ଆୟୋଜନ କରାଯାଇଥିଲା । ତିନିଦଳ ଯାତ୍ରାବାଲା ସେମାନଙ୍କ ଯାତ୍ରାଭିନୟ ପ୍ରଦର୍ଶନ କରିଥିଲେ । ତୃତୀୟ ଦଳଟି ଓଡ଼ିଆ ଯାତ୍ରାଭିନୟ ପ୍ରଦର୍ଶନ କରି ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିବା ସମ୍ବାଦ 'ସମ୍ବାଦ ବାହିକା'ରେ ପ୍ରକାଶ ପାଇଥିଲା । "ବାରବାଟୀ ସାଇରୁ ତୃତୀୟ ଦଳ ବାହାରି ଅଛନ୍ତି । ଏମାନେ ଓଡ଼ିଆ ଯାତ୍ରାଦଳ । X X X ବଡ଼ ଆଶ୍ଚର୍ଯ୍ୟ ଓ ବଡ଼ ଆନନ୍ଦର ବିଷୟ ଯେ କେତେକ ଅଶିକ୍ଷିତ ଲୋକ

---

୧ । ଓଡ଼ିଆ ନାଟକର ବିକାଶଧାରା—ଅଧ୍ୟାପକ ହେମନ୍ତ କୁମାର ଦାସ (ପୃ. ୧୦୦)

୨ । ସମ୍ବାଦ ବାହିକା ୧ । ୧୧ । ୧୮୭୫

ବଙ୍ଗଳା ଯାତ୍ରାକୁ ନମୂନା ସ୍ୱରୂପ କରି ସେହି ଅନୁକରଣରେ ତାହା କରିପାରିଲେ ଓ ଏହି ଦଳ ଓଡ଼ିଶାର ଯାତ୍ରା ଦଳର ଆଦର୍ଶ ହେଲେ ବୋଲିବାକୁ ହେବ ।" (୩)

ଯେଉଁମାନଙ୍କର ଶୁଭଦାନରେ ଏହି ବାଲେଶ୍ୱର ଜିଲ୍ଲାର ସମୃଦ୍ଧ ଯାତ୍ରାପରମ୍ପରା ସୁସମୃଦ୍ଧ, ସେହିମାନଙ୍କ ସାଧନା ଏବଂ ସଂସାର ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଏହି ପ୍ରବନ୍ଧର ଲକ୍ଷ୍ୟ ।

**କବି ବଂଶୀବଲ୍ଲଭ ଗୋସ୍ୱାମୀ**— 'ଚଇତ ତାମସା' ରଚନା କରି କବି ବଂଶୀବଲ୍ଲଭ ଓଡ଼ିଆ ଯାତ୍ରାକୁ ସମୃଦ୍ଧ କରିଛନ୍ତି । ଏହା ଏକ ଯାତ୍ରାଧର୍ମୀ ଲୋକନାଟକ । ଶିବମନ୍ଦିର ସମ୍ମୁଖରେ ମୁକ୍ତମଞ୍ଚରେ ଏହା ଅଭିନୀତ ହୁଏ । ଯାତ୍ରାପରି ଚଇତ ତାମସାରେ ପୁରୁଷମାନେ ନାରୀ ଭୂମିକାରେ ଅଭିନୟ କରନ୍ତି । ଯାତ୍ରାଧର୍ମୀ ଏହି ଚଇତ ତାମସାରେ ଗଦ୍ୟ ସଂଳାପ ବ୍ୟବହାରରେ ପରବର୍ତ୍ତୀ ଯାତ୍ରା ଲେଖକମାନଙ୍କ ପାଇଁ ବଂଶୀବଲ୍ଲଭ ହେଉଛନ୍ତି ପଥପ୍ରଦର୍ଶକ । ଯାତ୍ରାର ନିକଟତମ ଲୋକନାଟ୍ୟ ଏହି 'ଚଇତ ତାମସା' ବାଲେଶ୍ୱର ଜିଲ୍ଲାର ଭଦ୍ରକ ସହର ନିକଟବର୍ତ୍ତୀ ସଙ୍ଗତ ଗ୍ରାମର କବି ସ୍ୱର୍ଗତ ବଂଶୀବଲ୍ଲଭ ଗୋସ୍ୱାମୀଙ୍କ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀରେ ରଚିତ ହୋଇଥିଲା ।

ଖ୍ରୀଷ୍ଟୀୟ ୧୭୬୮ ମସିହାରେ ବଂଶୀବଲ୍ଲଭ ଭୂମିଷ୍ଠ ହୋଇଥିଲେ । ସେ ଜଣେ ପ୍ରତିଭାଧର ଗଣନାଟ୍ୟ ଓ ଗଣସଙ୍ଗୀତ ସ୍ରଷ୍ଟା ଥିଲେ । ମୁଖ୍ୟତଃ ଚଇତ ତାମସାର ଲେଖକରୂପେ ବଂଶୀବଲ୍ଲଭ ଭଦ୍ରଖ ଅଞ୍ଚଳରେ ଏକଦା ଅତ୍ୟନ୍ତ ଲୋକପ୍ରିୟ ଥିଲେ । ଚୈତ୍ର ମାସରେ ବଂଶୀବଲ୍ଲଭଙ୍କ ରଚିତ ତାମସା ଅଭିନୀତ ହୁଏ ବୋଲି ଏହାକୁ ଚଇତ ତାମସା କୁହାଯାଏ । ଚଇତ ତାମସାର କେତେକ ବିଭାଗ ହେଉଛି—ଚଢ଼ିଆ ତାମସା, ଫକୀର ତାମସା, ରାଧାକୃଷ୍ଣ ତାମସା, ଯୋଗୀ ତାମସା ଓ ମୋଗଲ ତାମସା ପ୍ରଭୃତି । ଚଇତ ତାମସାରେ ମୋଗଲ ବାଦଶାହା, ମୋଗଲ ଦରବାର ପ୍ରଭୃତିର ଚିତ୍ର ଏପରି ଚିତ୍ତାକର୍ଷକ, ଜୀବନ୍ତ ଓ ଉପଭୋଗ୍ୟ ହୁଏ ଯେ ଚଇତ ତାମସାକୁ ଭଦ୍ରକ ଅଞ୍ଚଳର ଜନସାଧାରଣ ମୋଗଲ ତାମସା ବୋଲି କହନ୍ତି ।

ଚଇତ ତାମସା ଅଭିନୀତ ହୁଏ ମୁକ୍ତ ମଞ୍ଚରେ । ଯାତ୍ରାରେ ଯେପରି ଦର୍ଶକ ମୁକ୍ତ ମଞ୍ଚର ଚତୁଃପାର୍ଶ୍ୱରେ ବସନ୍ତି, ଏଥିରେ ସେପରି ବସନ୍ତି ନାହିଁ । ଚଇତ ତାମସା ମଣ୍ଡପର ସମ୍ମୁଖରେ କେବଳ ଦର୍ଶକମାନେ ବସନ୍ତି । ଏଥିରେ କାହାଳୀ ଓ ଢୋଲ୍ଡ଼ନାଗରା କନ୍‌ସର୍ଟ ପାର୍ଟିର କାମକରେ । ବିଂଶ ଶତାବ୍ଦୀର ଅର୍ଦ୍ଧାଧିକ କାଳ ପର୍ଯ୍ୟନ୍ତ ଭଦ୍ରକରେ ମୋଗଲ ତାମସା ନିୟମିତ ଭାବରେ ଅଭିନୀତ ହେଉଥିଲା । ଏବେ ଅନିୟମିତ ଭାବରେ କେବେ କେମିତି ଅଭିନୀତ ହୋଇଥାଏ ।

---

୩ । ସମ୍ବାଦ ବାହିକା ୧୬ । ୧୦ । ୧୯୭୫

**ଜଗନ୍ନାଥ ପାଣି :**— ସ୍ୱର୍ଗତ ଜଗନ୍ନାଥ ପାଣିଙ୍କ ଜୀବନ କାଳ ଖ୍ରୀଷ୍ଟୀୟ ୧୮୬୭ରୁ ୧୮୯୭ ମସିହା ମଧ୍ୟରେ ସୀମିତ । ଭଦ୍ରଖ ସହରଠାରୁ ୫ କି· ମି ଦୂରବର୍ତ୍ତୀ ନେଳାଙ୍ଗ ଗ୍ରାମରେ ସେ ଭୂମିଷ୍ଠ ହୋଇଥିଲେ । ସେ ପ୍ରଥମ ଓଡ଼ିଆ ଯାତ୍ରା ଲେଖକ । ସ୍ୱର୍ଗତଃ ପାଣି ପ୍ରଥମେ ଲୀଳା ଓ ତାମସା ରଚନା କରି ନିଜର ଯାତ୍ରାଦଳ ଦ୍ୱାରା ଅଭି-ନୟ କରୁଥିଲେ । ଜଣେ କୁଶଳୀ ଅଭିନେତା ଓ ସୁଦକ୍ଷ ନିର୍ଦ୍ଦେଶକ ରୂପେ ମଧ୍ୟ ଜଗନ୍ନାଥ ପାଣିଙ୍କର ସୁନାମ ଥିଲା । ତାଙ୍କ ରଚନାମାନଙ୍କ ମଧ୍ୟରୁ ଧ୍ରୁବଚରିତ, ପ୍ରହ୍ଲାଦ ଚରିତ, ପାରିଜାତ ହରଣ, ସତ୍ୟଭାମାବ୍ରତ, ସୀତାବନବାସ, ଲବକୁଶ ଯୁଦ୍ଧ, ବାଲି ବାମନ, ରଣଜିତ ରାଜ ଉପାଖ୍ୟାନ, ଉଷାହରଣ, ଲକ୍ଷ୍ମଣ ଶକ୍ତିଭେଦ ପ୍ରଭୃତି ପ୍ରଧାନ । ରାଧାକୃଷ୍ଣ କୌତୁକ, ଗୋପାଳ ଗୋପାଳୁଣୀ, ବାବୁ ବାବୁଆଣୀ, ଧୋବା ଧୋବଣୀ କେଳା କେଳୁଣୀ, ବୈଦ୍ୟରାଗୀ, ମୋଗଲ ଗୌଡୁଣୀ ପ୍ରଭୃତି ତାଙ୍କ ରଚିତ କେତୋଟି ତାମସା ।

**ଭାଗୀରଥୀ ମହାପାତ୍ର :**— ପ୍ରଥମ ଓଡ଼ିଆ ଏନ୍‌ସାଇକ୍ଲୋ ପିଡ଼ିଆର ରଚୟିତା ଭାଗୀରଥୀ ମହାପାତ୍ର ଖ୍ରୀଷ୍ଟୀୟ ୧୮୮୭ ମସିହାରେ ଭଦ୍ରଖ ନିକଟସ୍ଥ ଗରଦପୁର ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ୧୯୪୫ ମସିହାରେ ତାଙ୍କର ଦେହାନ୍ତ ଘଟିଥିଲା । ସେ ଜଣେ ପ୍ରତିଭାବାନ ଯାତ୍ରାନାଟକ ରଚୟିତା ଥିଲେ । ଅଗରପଡ଼ାର ପ୍ରଭାକର ସାମନ୍ତ ରାୟଙ୍କର ଯାତ୍ରାଦଳରେ ମୁଖ୍ୟତଃ ଭାଗୀରଥୀ ମହାପାତ୍ରଙ୍କ ରଚିତ ଯାତ୍ରା ନାଟକମାନ ତଦ୍ୱାରା ଅଭିନୀତ ହେଉଥିଲା । ତାଙ୍କ ରଚିତ ଗୀତାଭିନୟ ଓ ଯାତ୍ରା ନାଟକମାନଙ୍କ ମଧ୍ୟରେ ବଭ୍ରୁବାହନ, ହରିଶ୍ଚନ୍ଦ୍ର, ଧ୍ରୁବ, ସୁଭଦ୍ରା, ସୀତାବିବାହ, ସୀତା ବନବାସ, ରାଧିକା ମାନଭଞ୍ଜନ, ଚନ୍ଦ୍ରକଳା ଶ୍ରୀମନ୍ତ ଚରିତ ପ୍ରଭୃତି ପ୍ରଧାନ ।

**କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର :**— ବିଦଗ୍ଧ ସାହିତ୍ୟ ଜଗତରେ ଦରଦୀ କବି ଓ କଥାକାର ଲକ୍ଷ୍ମୀକାନ୍ତ ଯେତିକି ପ୍ରତିଷ୍ଠିତ ଲୋକନାଟ୍ୟ ଜଗତରେ ସେତିକି ଅଜ୍ଞାତ ଓ ବିସ୍ମୃତପ୍ରାୟ । ନିଜର ଜନ୍ମଗ୍ରାମ ତାଳପଦାଠାରେ ସେ ଗୋପୀ-ନାଥ ନାଟ୍ୟସମାଜ ନାମରେ ଏକ ଯାତ୍ରାଦଳ ଗଢିଥିଲେ । ତାଙ୍କ ରଚିତ ବ୍ରଜବର୍ଜନ ବସନ୍ତରାସ, ଶରଦ୍‌ରାସ, କାଳୀୟଦଳନ, ଲକ୍ଷ୍ମୀ ଚଣ୍ଡାଳୁଣୀ ଓ ଗୌର ସନ୍ନ୍ୟାସ ପ୍ରଭୃତି ନାଟକ ଗୋପୀନାଥ ନାଟ୍ୟ ସମାଜଦ୍ୱାରା ମଞ୍ଚସ୍ଥ ହୋଇଥିଲା । ଏହି ଦଳ ସହିତ ସ୍ୱର୍ଗତ କୃଷ୍ଣପ୍ରସାଦ ବସୁଙ୍କର ଯାତ୍ରାଦଳର ପ୍ରତିଯୋଗିତା ଏକ ସମୟରେ ଭଦ୍ରକ ଅଞ୍ଚଳରେ ଖୁବ୍ ଚିତ୍ତାକର୍ଷକ ହେଉଥିଲା ।

**ଗଣକବି ବାଞ୍ଛାନିଧି ମହାନ୍ତି :**—ସ୍ୱର୍ଗତ ମହାନ୍ତି ମୁଖ୍ୟତଃ ଜାତୀୟ ସ୍ୱଦେଶପ୍ରେମ ସମ୍ବଳିତ ଜାଗରଣ ଗୀତ ରଚୟିତା ଭାବରେ ଓଡ଼ିଶା ଓ ଓଡ଼ିଶା

ବାହାରେ ସୁପରିଚିତ । ସେ ମଧ୍ୟ ଜଣେ ସୁକଣ୍ଠ ଗାୟକ ଓ ଅଭିନେତା ରୂପେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଭଦ୍ରକ ସଦର୍ ଭିଭିଜନ ଅନ୍ତର୍ଗତ ରକ୍ତତୀର୍ଥ ଇରମ୍‌ରେ ଥିବା ରାଧାମୋହନ ଥିଏଟର ପାର୍ଟି, ମଇତାପୁର କୃଷ୍ଣଚନ୍ଦ୍ର ଥିଏଟର ପାର୍ଟି ଓ ଦି' ଉତ୍କଳ ନାଟ୍ୟ ନିକେତନ, ଦି' ଓଡ଼ିଶା ଥିଏଟର୍ସ ପ୍ରଭୃତି ନାଟ୍ୟଦଳ ସହିତ ସେ ସମ୍ପୃକ୍ତ ଥିଲେ । ସେ ଜଣେ ନାଟ୍ୟସ୍ରଷ୍ଟା ମଧ୍ୟ ଥିଲେ । ତାଙ୍କ ରଚିତ 'ପଲ୍ଲୀଚିତ୍ର' ନାଟକ ଏ ପର୍ଯ୍ୟନ୍ତ ଲୋକ ଦୃଷ୍ଟିକୁ ଆସିଛି ।

**ସନା, ହାଡ଼ିଆ, ପଞ୍ଚୁଆ, ଅର୍ଜୁନଚନ୍ଦ ଦଳ:**—ପ୍ରାୟ ୫୦/୬୦ ବର୍ଷ ତଳେ ଭଦ୍ରକ ଅଞ୍ଚଳରେ ଲୋକେ ସନାଯାତ୍ରା ଓ ହାଡ଼ିଆଯାତ୍ରା ନାଁ ଶୁଣିଲେ ଖୁସିରେ ଯାତ୍ରା ଦେଖିବା ପାଇଁ ବାହାରି ପଡୁଥିଲେ । ନିଜ ଗ୍ରାମ ଭଣ୍ଡାରି ପୋଖରୀ ନିକଟସ୍ଥ ପାଳସାହିରେ ସନାତନ ପାଲ ଯାତ୍ରାଦଳ ଗଢ଼ି ଯାତ୍ରାଭିନୟ ପ୍ରଦର୍ଶନ କରୁଥିଲେ । ହାଡ଼ିବନ୍ଧୁ ଦାସଙ୍କର ଜନ୍ମ ଭଣ୍ଡାରି ପୋଖରୀ ନିକଟସ୍ଥ ପୁଟୁଲି ଗ୍ରାମରେ । ନିଜ ଗ୍ରାମରେ ସେ ଯେଉଁ ଦଳ ଗଢ଼ିଥିଲେ ତାହା ହାଡ଼ିଆଦଳ ନାମରେ ପରିଚିତ ଥିଲା । ପରବର୍ତ୍ତୀ କାଳରେ ଭଣ୍ଡାରି ପୋଖରୀ ଅଞ୍ଚଳରେ ପଞ୍ଚୁଆଦଳ ଓ ଅର୍ଜୁନ ଚନ୍ଦ ଦଳ ଲୋକଙ୍କ ଜୟ କରିପାରିଥିଲେ ।

ଭଦ୍ରକ ସବ୍‌ଡିଭିଜନ ଅନ୍ତର୍ଗତ ଏଡ଼ତାଳ ଗ୍ରାମର ଜମିଦାର ଭୂୟାଁ ଈଶ୍ୱରଚନ୍ଦ୍ର ମହାପାତ୍ର, ହରିପୁରର ରତ୍ନାକର ଦାସ ଏବଂ ପୂର୍ଣ୍ଣଚନ୍ଦ୍ର ଦାସ ପ୍ରଭୃତି ଯାତ୍ରାଦଳମାନ ଗଢ଼ିଥିଲେ ।

ବାଲେଶ୍ୱର ଜିଲ୍ଲାର ସୋର—ମଙ୍ଗଳପୁର ଅଞ୍ଚଳରେ ପ୍ରାୟ ଏକଶତବର୍ଷ ପୂର୍ବେ ରାଜା ଶ୍ରୀ ଉମାକାନ୍ତ ଦାସ ବୈଷ୍ଣବଚରଣ ମହାପାତ୍ରଙ୍କ ପୃଷ୍ଠପୋଷକତାରେ ଯୁବରାଜଙ୍କ ଉତ୍ସାହରେ ଏବଂ ଶିକ୍ଷକ ପଟ୍ଟନାୟକ ଶ୍ରୀ କୃଷ୍ଣକାନ୍ତ ଦାସଙ୍କ ସାହାଯ୍ୟରେ 'ମହାପ୍ରଭୁ ବାଡ଼ିଆ' ନାମରେ ଏକ ଯାତ୍ରାଦଳ ସୃଷ୍ଟି ହୋଇଥିଲା । ସ୍ୱୟଂ ରାଜା, ଯୁବରାଜ ଓ କୃଷ୍ଣକାନ୍ତ ଦାସଙ୍କ ରଚିତ ପୌରାଣିକ ଲୋକନାଟ୍ୟମାନ 'ମହାପ୍ରଭୁ ବାଡ଼ିଆ' ଯାତ୍ରା ଦଳ ଦ୍ୱାରା ଅଭିନୀତ ହେଉଥିଲା । ସେହି ଅଞ୍ଚଳରେ ସ୍ୱର୍ଗୀୟ ଭଗବାନ ରାଉତ ଥିଲେ ଆଉ ଜଣେ ସୁପରିଚିତ ଗଣନାଟ୍ୟ ସ୍ରଷ୍ଟା । ଶିମୁଳି ପାଟଣା ଗ୍ରାମରେ ତାଙ୍କର ଜନ୍ମ । ବିଭିନ୍ନ ଗ୍ରାମରେ ଯାତ୍ରାଦଳ ଗଢ଼ି ନିଜ ଯାତ୍ରାନାଟକମାନ ସେ ଅଭିନୀତ କରାଇଥିଲେ । ପରିତାପର ବିଷୟ, ବହୁ ଯାତ୍ରାନାଟକ ସେ ଅଞ୍ଚଳର ରାଜପୁରୁଷ, କୃଷ୍ଣକାନ୍ତ ଦାସ । ଓ ଭଗବାନ ରାଉତଙ୍କ ଦ୍ୱାରା ରଚିତ ହୋଇଥିଲେ ମଧ୍ୟ ଖଣ୍ଡିଏ ବି ପ୍ରକାଶିତ ହୋଇ-

**କାହ୍ନୁଚରଣ ନାୟକ** :— ଭଦ୍ରକ ସବ୍‌ଡିଭିଜନ ଅନ୍ତର୍ଗତ ବନ୍ତରେ ଥିବା ଶ୍ରୀ କାହ୍ନୁଚରଣ ନାୟକଙ୍କ ଯାତ୍ରାଦଳ ଗଣନାଟ୍ୟ ପରିବେଷଣ କ୍ଷେତ୍ରରେ ଅତ୍ୟାଧୁନିକ

ୀତର ପ୍ରବର୍ତ୍ତକ । ଏହାଦଳ ଓଡ଼ିଶା ଓ ଓଡ଼ିଶା ବାହାରେ ଯାତ୍ରାଭିନୟ ପ୍ରଦର୍ଶନ ଲରି ସୁନାମ ଅର୍ଜନ କରିଅଛି ।

**ସ୍ୱର୍ଗତ କୃଷ୍ଣପ୍ରସାଦ ବେହେରା**:—ପ୍ରାୟ ୨୫/୩୨ ବର୍ଷ ତଳେ ଭଦ୍ରଖ ଓ ଧାମନଗର ଅଞ୍ଚଳରେ କୃଷ୍ଣପ୍ରସାଦ ବେହେରାଙ୍କର ଯାତ୍ରାଦଳ ଏକ ଲୋକପ୍ରିୟ ଯାତ୍ରାଦଳ ରୂପେ ସୁନାମ ଅର୍ଜନ କରିଥିଲା ଭଦ୍ରଖଠାରୁ ୫ କିଲୋମିଟର ଦୂର ନଲାଙ୍ଗ ଗ୍ରାମରେ ସ୍ୱର୍ଗତ ବେହେରା ଜନ୍ମଗ୍ରହଣ କରିଥିଲେ । କିନ୍ତୁ ଧାମନଗର ଥାନା ଅନ୍ତର୍ଗତ ରାମାବଲ୍ଲଭ ଗ୍ରାମଥିଲା ତାଙ୍କର ସାଧନାକ୍ଷେତ୍ର । ଏକାଧିକ ଯାତ୍ରାଦଳ ଗଢି ନିଜ ରଚିତ ନାଟକମାନେ ସେ ଅଭିନୀତ କରାଉଥିଲେ । ସେ ନିଜେ ଜଣେ କୁଶଳୀ ଅଭିନେତା ଓ ଦକ୍ଷ ନିର୍ଦ୍ଦେଶକ ମଧ୍ୟ ଥିଲେ । କେଳା, କୃଷ୍ଣବୈରାଗୀ ଭୂମିକାରେ ତାଙ୍କ ପ୍ରାଣସ୍ପର୍ଶୀ ବାସ୍ତବ ଅଭିନୟ ଏହି ଲେଖକ ପ୍ରାୟ ୧୯୫୮/୫୯ ମସିହାରେ ସ୍କୁଲଛାତ୍ର ଥିବାବେଳେ ଯାହା ଦେଖିଥିଲା ଏପର୍ଯ୍ୟନ୍ତ ତାହା ବିସ୍ମୃତ ହୋଇ ନାହିଁ । ଭଦ୍ରଖ ଓ ଧାମନଗର ଅଞ୍ଚଳରେ 'ବେହେରା ମାଷ୍ଟର' ନାମରେ ସେ ସୁପରିଚିତ ଥିଲେ ।

ତାଙ୍କର ଯାତ୍ରା ନାଟକ ମାନଙ୍କୁ ଅଧିକ ଲୋକପ୍ରିୟ କରିଥିଲା ତାଙ୍କ ରଚିତ ପ୍ରାଣ ସ୍ପର୍ଶୀ ପଲ୍ଲୀସଙ୍ଗୀତ ଗୁଡ଼ିକ । ଧାମନଗର ଓ ଭଦ୍ରଖ ଅଞ୍ଚଳରେ ସାଧାରଣ ଲୋକେ ତାଙ୍କୁ ପଲ୍ଲୀକବି କୃଷ୍ଣ ବେହେରା ବୋଲି ମଧ୍ୟ କହୁଥିଲେ ।

ବନ୍ଦମାଦିତ୍ୟ, କଳାବଜାଗ୍ନି, ରାଜମୁକୁଟ, ଶଙ୍କିତ, କାଳପିପାସା, ଲୌହମାନବ ମାତୃଶକ୍ତି, ଦୁର୍ବୃତ୍ତ ଜଟାଇବ କାହାକୁ ପ୍ରଭୃତି ଯାତ୍ରାନାଟକ ସ୍ୱର୍ଗତ ବେହେରାଙ୍କ ଦ୍ୱାରା ରଚିତ ହୋଇ କହୁଁରାପୋଖରୀ, ଚୂଡ଼ାକୁଟି ପ୍ରଭୃତି ଯାତ୍ରାଦଳ ଦ୍ୱାରା ଅଭିନୀତ ହୋଇ-ଥିଲା । ତାଙ୍କର ସମସ୍ତ ରଚନା ପ୍ରକାଶ ପାଇ ନାହିଁ । ବନ୍ଦମାଦିତ୍ୟ, କଳାବଜାଗ୍ନି, ରାଜମୁକୁଟ, ଶଙ୍କିତ ପ୍ରଭୃତି ଅଳ୍ପ କେତୋଟି ମାତ୍ର ଯାତ୍ରା ନାଟକ ପ୍ରକାଶ ପାଇଅଛି ।

**ସ୍ୱର୍ଗତ ଶ୍ୟାମସୁନ୍ଦର ମହାପାତ୍ର** :—ଭଦ୍ରଖ ସବ୍‌ଡ଼ିଭିଜନ ଅନ୍ତର୍ଗତ ସୋରୋ ଗ୍ରାମରେ ଶ୍ରୀ ମହାପାତ୍ରଙ୍କ ଜନ୍ମ । ନିଜ ଗ୍ରାମ ସୋରରେ ତାଙ୍କର ଯାତ୍ରାଦଳ 'ସୋରପାର୍ଟି' ନାମରେ ଏକଦା ସୁପରିଚିତ ଥିଲା । ବହୁ ଉତ୍‌ଥାନ ପତନ ମଧ୍ୟଦେଇ ନିଜ ଯାତ୍ରାଦଳକୁ ସେ ବଞ୍ଚାଇ ରଖିଥିଲେ । ଧାମନଗରରେ 'ନାଟ୍ୟରୂପା ନାମକ ଏକ ଯାତ୍ରାଦଳ ଗଢି ସେ ନିଜ ରଚିତ ଏବଂ ଅନ୍ୟ ପ୍ରସିଦ୍ଧ ଯାତ୍ରା ନାଟକମାନ ଅଭିନୟ କରୁଥିଲେ । ତାଙ୍କ ରଚିତ ନାଟକ ମାନଙ୍କ ମଧ୍ୟରେ ବନ୍ଦମାଦିତ୍ୟ, ମାତୃପୂଜା ଦକ୍ଷଯଜ୍ଞ ଆଦି ପ୍ରଧାନ । ଜଣେ ଦକ୍ଷ ନିର୍ଦ୍ଦେଶକ ଓ ଅଭିନେତା ରୂପେ ସେ ସୁପରିଚିତ । 'ମଥୁରାବିଜୟ' କଥାଚିତ୍ରରେ ଶ୍ରୀ ମହାପାତ୍ର ଅକ୍ରୂର ଭୂମିକାରେ ଅଭିନୟ କରିଛନ୍ତି ।

**ରଘୁନାଥ ପଣ୍ଡା** :—ଭଦ୍ରଖ ସବ୍‌ଡ଼ିଭିଜନ ଅନ୍ତର୍ଗତ ଆନନ୍ଦ ବଜାର ନିକଟବର୍ତ୍ତୀ ଗଣ୍ଡାମାଳ ଗ୍ରାମରେ ଶ୍ରୀ ରଘୁନାଥ ପଣ୍ଡା ଭୂମିଷ୍ଠ ହୋଇଥିଲେ । କୈଶୋର

ଜୀବନରେ କବିଚନ୍ଦ୍ର କାଳୀଚରଣଙ୍କ ନାଟ୍ୟଶାଳାରେ ଶିକ୍ଷାନବୀସ ରୂପେ ଶ୍ରୀ ପଣ୍ଡାଙ୍କର କଳାକାର ଜୀବନର ଉନ୍ମେଷ ଓ ବିକାଶ ଘଟିଥିଲା । ସେ ଜଣେ କୁଶଳୀ ଅଭିନେତା ସୁସଂଗଠକ ଓ ଅପ୍ରତିଦ୍ୱନ୍ଦ୍ୱୀ ନିର୍ଦ୍ଦେଶକ ଭାବରେ ଲୋକଦୃଷ୍ଟି ଆକର୍ଷିତ କରିପାରିଛନ୍ତି । ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ବହୁ ଯାତ୍ରାଦଳ ଗଠନ କରି ଆଜି ପର୍ଯ୍ୟନ୍ତ ଓଡ଼ିଶା ଓ ଓଡ଼ିଶା ବାହାରେ ୬ ପଣ୍ଡା ନିଜଲିଖିତ ଯାତ୍ରାଭିନୟ ପ୍ରଦର୍ଶନ କରି ପ୍ରଶଂସିତ ହୋଇ ଆସୁଛନ୍ତି । ତୁଙ୍ଗୁରୁ ଦଳ, ଭଞ୍ଜସାହି ଦଳ, ସପ୍ତମାତୃକା ଅପେରା ଓ ନୀଳଚକ୍ର ଅପେରା ପ୍ରଭୃତି ଯାତ୍ରାଦଳ ଗଠନକରି ୬ ପଣ୍ଡା ଓଡ଼ିଶାର ବହୁପ୍ରଶଂସିତ ଯାତ୍ରା ଅଭିନେତା ମାନଙ୍କୁ ନିଜହାତରେ ଗଢି ଜଣେ ଜଣେ ପ୍ରଖ୍ୟାତ ଅଭିନେତା ଭାବରେ ପ୍ରତିଷ୍ଠା ଦେଇ ଛନ୍ତି । ସୁପରିଚିତ ଯାତ୍ରାଭିନେତା ବିଷ୍ଣୁପତି, ବୈଦ୍ୟନାଥ ଆରଣ, ଗଙ୍ଗାଧର ନାଥ, ଗୋପାଳ ଗୋସ୍ୱାମୀ, ଦେବ ମଲ୍ଲିକ, ନିତ୍ୟାନନ୍ଦ ପାତ୍ରୀ ଓ ଆହୁରି ବହୁ ଅଭିନେତାଙ୍କର ଶିକ୍ଷାଗୁରୁ ଭାବରେ ୬ ପଣ୍ଡାଙ୍କର କୃତିତ୍ୱ କିଛି କମ୍ ନୁହେଁ ।

ଗଣନାଟ୍ୟ ସ୍ରଷ୍ଟାରୂପେ ୬ ପଣ୍ଡା ବାଲେଶ୍ୱର ଜିଲାରେ ସର୍ବତ୍ର ସୁପରିଚିତ । ବହୁ ଗଣନାଟକର ସ୍ରଷ୍ଟା ୬ ରଘୁନାଥ ପଣ୍ଡାଙ୍କର ନାଟକ ମାନଙ୍କ ମଧ୍ୟରୁ ବହୁପ୍ରଶଂସିତ କେତେକ ସୃଷ୍ଟିର ନାମ ଏଠାରେ ଉଦ୍ଧାର କରାଗଲା ।

| | |
|---|---|
| ୧ । ରକ୍ତ ଉକାପତ | ୨ । ଶିକୁ ନ୍ତଳା |
| ୩ । ହଳଦିଘାଟ | ୪ । ରାମରାଜ୍ୟ |
| ୫ । ମହାସତୀ ସାବିତ୍ରୀ | ୬ । ଝୁଲଣା ସୁନ୍ଦରୀ |
| ୭ । ମରଣ ଆଖିରେ ଲୁହ | ୮ । ବିଚିତ୍ର ଦୁନିଆ |
| ୯ । ଯୋଗଜନ୍ମା ରାବଣ | ୧୦ । ଅଙ୍ଗାର |
| ୧୧ । ଅସ୍ତରାଗ | ୧୨ । ପଞ୍ଚାବିକେଶରୀ |
| ୧୩ । ରାମ ଆଉ ରହିମ୍ | ୧୪ । ସେରାଜ୍ଦୌଲା ନବାବ |
| ୧୫ । ଦୁଃଖ ନଦୀର ତୀରେ | ୧୬ । କାହ୍ନୁ |
| ୧୭ । ଅନାରକଲି । | |

**ଉମାକାନ୍ତ ବେହେରା** :— ବାଲେଶ୍ୱର ଜିଲାର ବସ୍ତାଥାନା ଅନ୍ତର୍ଗତ ଆଲମଙ୍ଗା ଗ୍ରାମରେ ୧୯୩୨ ମସିହାରେ ଶ୍ରୀ ଉମାକାନ୍ତ ବେହେରାଙ୍କର ଜନ୍ମ । ବିଭିନ୍ନ ସ୍ଥାନରେ ନାଟ୍ୟ ଦଳମାନ ଗଢ଼ି ଶ୍ରୀ ବେହେରା ନିଜ ରଚିତ ନାଟକମାନ ଅଭିନୀତ କରି ସୁନାମ ଅର୍ଜନ କରିପାରିଛନ୍ତି । ଶ୍ରୀ ବେହେରା ପ୍ରାୟ ଶତାଧିକ ଗଣନାଟକର ସ୍ରଷ୍ଟା । ତାଙ୍କର କେତେକ ବିଖ୍ୟାତ ନାଟକର ନାମ ଏଠାରେ ଉଦ୍ଧାର କରାଗଲା ।

| | |
|---|---|
| ୧ । ରଖେ ହରି ମାରେ କିଏ | ୨ । ଭାଇଭଉଣୀ |
| ୩ । ଭାଇ ଭଉଣୀ | ୪ । ଧୂଆଁ ବାଣ |

୫ । ଅଭିଶାପ
୭ । କାଳପୁରୁଷ
୯ । ଭକ୍ତଧ୍ରୁବ
୧୧ । ଗୁରୁଦକ୍ଷିଣା
୧୩ । ଜମାନବନ୍ଦୀ
୧୫ । ବଙ୍ଗବନ୍ଧୁ ମୁଜିବୁର
୧୭ । ସମ୍ରାଟ୍ ସାହାଜାହାନ୍
୧୯ । ଗ୍ରୁଇ ଅଲ୍ଲୁଅ
୨୧ । ଶେଷ ପାନ୍ଥପଥ
୬ । ରକ୍ତ ଶପଥ
୮ । ବେଇମାନ
୧୦ । ଲୁଷ୍ଠନ୍ତି
୧୨ । ମୁକୁଟର ମାୟା
୧୪ । ଥରେ ଦେଖନ୍ତୁ
୧୬ । ବେଗମ ଆସମାନତାରା
୧୮ । ଭକ୍ତ ପ୍ରହ୍ଲାଦ
୨୦ । ମାତୃଶକ୍ତି
୨୨ । ଭୁଲର ଶାସ୍ତି

ଶତାଧିକ ଗଣନାଟକର ସ୍ରଷ୍ଟା ହେଲେ ମଧ୍ୟ ଶ୍ରୀ ବେହେରା ରଘୁନାଥ ପଣ୍ଡାଙ୍କପରି ମୌଳିକ ପ୍ରତିଭା ଗଣନାଟ୍ୟ ଶିଳ୍ପୀପରି ପ୍ରଶଂସ୍ୟମାନ ହୁଅନ୍ତି ନାହିଁ । ତାଙ୍କର ଅଧିକାଂଶ ନାଟକ ବଙ୍ଗଳା ନାଟକର ଅନୁବାଦ କିମ୍ବା ଛାୟାରେ ସୃଷ୍ଟି । ବାଲେଶ୍ୱର ଜିଲ୍ଲାର ଅନ୍ୟତମ ଉଦୀୟମାନ ଗଣନାଟ୍ୟକାର ନବକୁମାର ସାହୁ ପ୍ରକାଶ୍ୟ ଭାବରେ ପ୍ରତିବାଦ କରିଛନ୍ତି ଯେ ଏକ ରେଲୱେ ପ୍ଲାଟ୍‌ଫର୍ମରେ ତାଙ୍କଠାରୁ ତାଙ୍କ ନୂତନ ସୃଷ୍ଟି ଏକ ଗଣନାଟକ ସମ୍ପର୍କରେ ଶୁଣି ଶ୍ରୀ ବେହେରା ଅବିକଳ ସେହି କଥାବସ୍ତୁକୁ ଉପଜୀବ୍ୟ କରି ଭିନ୍ନ ନାମରେ ନାଟକ ରଚନା କରିଛନ୍ତି । ଅଥଚ ଶ୍ରୀ ବେହେରାଙ୍କ ତରଫରୁ ଏ ସମ୍ପର୍କରେ ଯଥାର୍ଥ ପ୍ରତିବାଦ ଏହି ଲେଖକ ଏ ପର୍ଯ୍ୟନ୍ତ କେଉଁଠାରେ ମୁଦ୍ରିତ ଆକାରରେ ଦେଖିବାକୁ ପାଇନାହିଁ । ଏଥିରୁ ମନେହୁଏ ଯେ ଶ୍ରୀ ରମାକାନ୍ତ ବେହେରାଙ୍କର ନାନା ନାଟକ ସୃଷ୍ଟି କ୍ଷେତ୍ରରେ ହୁଏତ ଶକ୍ତି ଅଛି କିନ୍ତୁ ଆଦର୍ଶ ନାହିଁ ।

**ନବକୁମାର ସାହୁ**—ଉଦୀୟମାନ ଗଣନାଟ୍ୟକାର ନବକୁମାର ସାହୁଙ୍କର ଜନ୍ମ ବାଲେଶ୍ୱର ଜିଲ୍ଲାର ଗୁଡ଼ବାଲି ଥାନା ଅନ୍ତର୍ଗତ ମତୋ ଗ୍ରାମରେ । ଅଦ୍ୟାପି ତାଙ୍କର ତ୍ରିଂଶାଧିକ ନାଟକ ପ୍ରକାଶ ଲାଭ କରିଛି । ତାଙ୍କର କେତେକ ପ୍ରଖ୍ୟାତ ନାଟକର ନାମ ଏଠାରେ ଉଲ୍ଲେଖ କରାଗଲା ।

୧ । ବସ୍ତିର ଜବାନ୍ ବା ଆସମାନ ଡାକୁ
୨ । ସିନ୍ଦୂର ଦିଅନା ପୋଛି
୩ । ମଶାଣିର ମଧୁଶଯ୍ୟା
୪ । ମା'ର ପୁଅ
୫ । ଲୌହ ମାନବ
୬ । ଫାଶିଖୁଣ୍ଟ
୭ । ହତ୍ୟାକାରୀ କିଏ
୮ । ନଷ୍ଟସତୀ
୯ । ଦୁଃଖୀ ପରିବାର
୧୦ । ଗରିବ ଝିଅ
୧୧ । ଦୈବଚକ୍ର
୧୨ । ବାଲ୍ୟ ବିଧବା

୧୩ । କଇଏ କାହାର
୧୪ । ବମ୍ଳଷା କନତା
୧୫ । ବରଣୀ କନ୍ୟା
୧୬ । ଶକ୍ତୀ ବାଲା
୧୭ । ଅପର୍ବ ଲୁହ
୧୮ । ବେଗମ ଆସମାନ୍ ତାରା
୧୯ । ସମ୍ପୂର୍ଣ୍ଣ ମହାଭାରତ

**ନୃସିଂହ ଚରଣ ମଲ୍ଲିକ**—ବାଲେଶ୍ୱର ଜିଲ୍ଲାର ଧାମନଗର ଥାନାନ୍ତର୍ଗତ ଗୁମୁଗଡ଼ ଗ୍ରାମରେ ଏହି ଗଣନାଟ୍ୟକାରଙ୍କର ଜନ୍ମ । ସେ ଜଣେ ଉଦୀୟମାନ ଗଣନାଟକସ୍ରଷ୍ଟା । ତାଙ୍କର ଏ ପର୍ଯ୍ୟନ୍ତ ପ୍ରକାଶିତ ଏକମାତ୍ର ଐତିହାସିକ ଯାତ୍ରାନାଟକ ହେଉଛି 'ରକ୍ତରେଖା' ।

**ଶ୍ୟାମ ସୁନ୍ଦର ଲେଙ୍କା**—ବାଲେଶ୍ୱର ଜିଲ୍ଲାର ଭଦ୍ରକ ସବ୍‌ଡିଭିଜନ୍ ଅନ୍ତର୍ଗତ ବନ୍ତଥାନାରେ ଥିବା ଭଣ୍ଡାରଗଡ଼ିଆ ଗ୍ରାମରେ ଲେଖକଙ୍କର ଜନ୍ମ । ସେ ପ୍ରାୟ ୧୦ ଖଣ୍ଡ ଲୋକନାଟକର ସ୍ରଷ୍ଟାଭାବରେ ଲୋକଦୃଷ୍ଟି ଆକର୍ଷଣ କରିଛନ୍ତି । ତାଙ୍କର ପ୍ରକାଶିତ ନାଟକ ହେଉଛି 'ସଇତାନ୍' ।

**ସୁକାନ୍ତ କୁମାର ଦାସ** – ବାଲେଶ୍ୱର ଜିଲ୍ଲାର ଆଉଜଣେ ଉଦୀୟମାନ ଗଣନାଟକ ସ୍ରଷ୍ଟା । ଅଭଣା ଗ୍ରାମରେ ସେ ଭୂମିଷ୍ଠ ହୋଇଥିଲେ । ଏ ପର୍ଯ୍ୟନ୍ତ ତାଙ୍କର ଦୁଇଖଣ୍ଡ ଯାତ୍ରା ନାଟକ ଆମ୍ଭମାନଙ୍କ ଦୃଷ୍ଟି ଆକର୍ଷଣ କରିଛି 'ଘରକୁ ସୁନ୍ଦର ଘରଣୀ' ଓ 'ଘରଣୀ' ।

ବାଲେଶ୍ୱର ଜିଲ୍ଲାର ବସ୍ତାରେ ଜନ୍ମ ଗ୍ରହଣ କରିଥିବା ଚନ୍ଦ୍ରାମଣି ଜେନା ଜଣେ ଉଦୀୟମାନ ଗଣନାଟ୍ୟ ସ୍ରଷ୍ଟା ଭାବେ ଅଳ୍ପକାଳ ମଧ୍ୟରେ ଲୋକଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ତାଙ୍କର ପ୍ରକାଶିତ ଏକମାତ୍ର ପୌରାଣିକ ଯାତ୍ରା-ନାଟକ ହେଉଛି 'ମାନଗୋବିନ୍ଦ' ।

ନଅଙ୍କ ଦୁର୍ଭିକ୍ଷପରେ ଯାତ୍ରାଦଳର ପୁନର୍ଗଠନ କରିବାରେ ଓଡ଼ିଶାରେ ମୁଖ୍ୟ ଅଂଶ ଗ୍ରହଣ କରିଥିବା କଥା ଉକ୍ତ ପ୍ରବନ୍ଧର ଆରମ୍ଭରେ ସୂଚାଇ ଦିଆଯାଇଛି । ସାଂପ୍ରତିକ କାଳରେ ମଧ୍ୟ ବାଲେଶ୍ୱର ଜିଲ୍ଲାରେ ଶତାଧିକ ଯାତ୍ରାଦଳ ଯାତ୍ରାଭିନୟ ପ୍ରଦର୍ଶନ କରିଚାଲିଛନ୍ତି । ସମ୍ପ୍ରତି ଯାତ୍ରାଭିନୟ ପ୍ରଦର୍ଶନ କରୁଥିବା ବିଂଶାଧିକ ଯାତ୍ରା-ଦଳର ନାମ ଏଠାରେ ଉଦ୍ଧାର କରାଗଲା ।

୧ । ଭଞ୍ଜସାହି ଅପେରା, ଭଞ୍ଜସାହି, ପୋ-ନଦୀଗାଁ, ଭାୟା-କୋଠାର, ଜି-ବାଲେଶ୍ୱର
ଲେଖକ, ନିର୍ଦ୍ଦେଶକ—ଶ୍ରୀ ବାମନ ଚରଣ ରାମ

୨ । ନୀଳଚନ୍ଦ୍ର ଅପେରା, ଆନନ୍ଦ ବଜାର, ଭଦ୍ରକ, ବାଲେଶ୍ୱର

୩ । ନାଟ୍ୟରୂପା, ଧାମନଗର, ବାଲେଶ୍ୱର,
ଲେଖକ ଓ ନିର୍ଦ୍ଦେଶକ— ଶ୍ୟାମସୁନ୍ଦର ମହାପାତ୍ର

୪ । ରଘୁନାଥଜୀଉ ଅପେରା, ଭଦ୍ରଖ, ବାଲେଶ୍ୱର,
ସତ୍ତ୍ୱାଧିକାରୀ ଶ୍ରୀ ଦାମୋଦର ମହାପାତ୍ର
ନିର୍ଦ୍ଦେଶକ ଶ୍ରୀ ଦେବେନ୍ଦ୍ର କୁମାର ମଲ୍ଲିକ

୫ । ମାମଙ୍ଗଳା ନାଟ୍ୟସଙ୍ଘ, ବାରଙ୍ଗିଆ-ନିର୍ଦ୍ଦେଶକ-ଶ୍ରୀ ଲୋକନାଥ ମଲ୍ଲିକ

୬ । ଜୟଦୁର୍ଗା କଳାନିକେତନ, ନୂଆପୁର

୭ । ଭାଲପଦା ଯୁବ-ଅପେରା, ଗୋପାଳପୁର

୮ । କୃଷ୍ଣଶ୍ରୀରାମ ଅପେରା, ଗୋପାଳପୁର

୯ । ଶ୍ରୀରାମପୁର ଅପେରା, ଶ୍ରୀରାମପୁର

୧୦ । ମହାପୁର ଯୁବ କଳିଙ୍ଗ ଅପେରା, ମଠହାଣ୍ଡି

୧୧ । ଝାଡେଶ୍ୱର ଅପେରା, ନୂଆବଜାର

୧୨ । ଇଚ୍ଛାପୁର ଅପେରା, ଇଚ୍ଛାପୁର

୧୩ । ଦୋଳ ଗୋବିନ୍ଦ ଅପେରା, ଦୋଳଗୋବିନ୍ଦ

୧୪ । କ୍ଷୀରଚୋରା ଅପେରା, ରେମୁଣା

୧୫ । ଚନ୍ଦନେଶ୍ୱର ଅପେରା; ଚନ୍ଦନେଶ୍ୱର

୧୬ । ପାରିଜାତ ଅପେରା, ଜଳେଶ୍ୱର

୧୭ । ପଞ୍ଚଲିଙ୍ଗେଶ୍ୱର ଅପେରା, କୁରୁଅ ପାଟଣା

୧୮ । ମହୁମୁହାଣ ଅପେରା, ମହୁମୁହାଣ

୧୯ । ସତ୍ସଙ୍ଗ ଅପେରା, ସରଣଙ୍ଗ

୨୦ । ଓଡ଼ଣା ଅପେରା, ବନ୍ତ

୨୧ । ବଳଭଦ୍ର ଅପେରା, ବଚ୍ଛଦା

୨୨ । ପଣ୍ଡେଶ୍ୱର ଅପେରା, ପଣ୍ଡାଶୁଣି

୨୩ । ଗୁରୁ ପ୍ରସାଦ ଅପେରା, ବେଣାପଦା

୨୪ । ଶ୍ରୀରାମଧଳ ଅପେରା, ଧାମନଗର

୨୫ । ଆମିଳା ପଞ୍ଚାୟତ ଅପେରା, ଆମିଳା

୨୬ । ଅଭଣା ଅପେରା, ଅଭଣା

୨୭ । କୁଯୁକୁର୍ ଅପେରା, କୁରୁଡ଼ା
୨୮ । ସୁଢ଼େଇ ବଡଗାଁ ଅପେରା, ସୁଢ଼େଇ ବଡ଼ଗାଁ
୨୯ । ଶ୍ରୀ ରାମଚନ୍ଦ୍ରପୁର ଅପେରା, ଶ୍ରୀ ରାମଚନ୍ଦ୍ରପୁର, ଜୁଡ଼ିଆ ବାଲେଶ୍ୱର
୩୦ । ଜଳେଶ୍ୱର ଅପେରା, ଜଳେଶ୍ୱର
୩୧ । ବାଉଁଶ କଣିଆ ଅପେରା, ନୀଳଗିରି

ବାଲେଶ୍ୱର ଜିଲ୍ଲାର ଯାତ୍ରାଦଳ ମାନଙ୍କ ମଧ୍ୟରେ ରଘୁନାଥ ପଣ୍ଡାଙ୍କର ନିଜାଙ୍କ ଅପେରା ଶ୍ରେଷ୍ଠ ବୋଲି ଏହି ଲେଖକଙ୍କର ବିନୀତ ମତ । ମୁଖ୍ୟତଃ ଏହାର କାରଣ ଏ ପଣ୍ଡାଙ୍କର ଐତିହାସିକ ଯାତ୍ରାନାଟକ ରଚନାରେ କୃତିତ୍ୱ ଏବଂ ବିଚକ୍ଷଣ ନିର୍ଦ୍ଦେଶନା, ନାରୀ ଭୂମିକାରେ ପୁରୁଷମାନଙ୍କର ଅଭିନୟ । ଏ ପଣ୍ଡାଙ୍କ ଯାତ୍ରାଦଳରେ ଯେଉଁମାନେ ଦେଖିଛନ୍ତି ତାଙ୍କର ନିର୍ଦ୍ଦେଶନା ସମ୍ପର୍କରେ ପ୍ରଶଂସାରେ ସେମାନେ ଶତମୁଖ ହୋଇଉଠନ୍ତି । 'ପଞ୍ଜାବ କେଶରୀ' ଓ 'ରୋହିଲା ନବାବ' ତାଙ୍କ ରଚିତ ଐତିହାସିକ ଯାତ୍ରା ନାଟକମାନଙ୍କ ମଧ୍ୟରେ ସର୍ବୋତ୍ତମ ବୋଲି ମନେହୁଏ । ତାଙ୍କ ଯାତ୍ରାନାଟକ ଗୁଡ଼ିକରେ ରହିଥିବା ସାହିତ୍ୟିକ ମୂଲ୍ୟ ଦୃଷ୍ଟିରୁ ଜଣମ୍ୟ ଲୋକ ଓ ବିଦଗ୍ଧ ଦର୍ଶକ ଏବଂ ପାଠକଙ୍କର ସେ ଶ୍ରଦ୍ଧାଭାଜନ ହୋଇପାରିଛନ୍ତି । ସେହିପରି ତାଙ୍କ ରଚିତ କେତେକ ସଙ୍ଗୀତ ଅନେକ ସ୍ଥଳେ ବିଦଗ୍ଧ ସଙ୍ଗୀତକାରର ରଚନା ବୋଲି ମନରେ ଭ୍ରମ ସୃଷ୍ଟି କରିଥାଏ । ଏ ସମ୍ପର୍କରେ ନିଜସ୍ମୃତିରୁ ଏଠାରେ ଗୋଟିଏ ମାତ୍ର ପାଦ ଉଦ୍ଧାର କରାଗଲା—

"ବିରହ-ଦରିଆ ସେ ପାରିଦେ ଧରେ
ମିଳନ ଦେଉଳଚୂଳା··· ।"

କେବଳ ବାଲେଶ୍ୱର କାହିଁକି ସମସ୍ତ ଓଡ଼ିଶାରେ ଐତିହାସିକ ଗଣନାଟ୍ୟ ମୂଷା ବିକଟରେ ଏ ରଘୁନାଥ ପଣ୍ଡାଂକର ସ୍ଥାନ ଅଦ୍ୱିତୀୟ ।

—*—

# — ବ୍ରଜମନୋହର କାବ୍ୟରେ ରସଦୃଷ୍ଟି —

**ଡକ୍ଟର ବଳଭଦ୍ର ସାହୁ**

ଆଧୁନିକ ରାଜନୈତିକ ମାନଚିତ୍ରରେ ଉତ୍କଳର ଗୁରୁତ୍ୱ ଅପେକ୍ଷା ତାର ଆଧ୍ୟାତ୍ମିକ ପ୍ରତିଷ୍ଠା ଅଧିକ ମର୍ଯ୍ୟାଦାପୂର୍ଣ୍ଣ । ଭାରତର ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଉତ୍କଳର ସ୍ଥାନ ସ୍ୱତନ୍ତ୍ର । ଏହି ସ୍ୱାତନ୍ତ୍ର୍ୟ ମୂଳରେ ରହିଛନ୍ତି ଜଗନ୍ନାଥ ଓ ତାଙ୍କ ଆରାଧନାକୁ କେନ୍ଦ୍ରକରି ଏକ ବିଶେଷ ପଦ୍ଧତି ଯାହା ଏକ ସ୍ୱତନ୍ତ୍ର ସଂସ୍କୃତି ବୋଲି ପରିଗଣିତ ହୋଇଛି । ଏହା ଏକ ବିଶେଷ ଦର୍ଶନର କଥା ନହେଲେ ମଧ୍ୟ ହିନ୍ଦୁ ଦର୍ଶନର ବଳିଷ୍ଠ ମାର୍ଗ ପ୍ରସ୍ତୁତ କରିଛି । କଳିଯୁଗର ଅବତାର ବୋଲି ଜଗନ୍ନାଥ ଗୃହୀତ ହେବାପରେ ଉଭୟ ଧର୍ମ ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ପ୍ରଭୁତ୍ୱ ବୃଦ୍ଧି ପାଇଛି । ସେ ହୋଇଛନ୍ତି ବୌଦ୍ଧରୂପି, ପୁଣି କଳିକାଳକୁ ମୁକ୍ତି ପ୍ରଦାନକାରୀ ପରଂବ୍ରହ୍ମ ସେ ଅବତାର ନୁହଁନ୍ତି ସ୍ୱୟଂ ଅବତାରୀ । ଏହି ବିଶ୍ୱାସ ତାଙ୍କୁ ଅନନ୍ୟ ଆରାଧ୍ୟ ଦେବତା ବୋଲି ପ୍ରତିପାଦନ କରିଛି । ଏଣୁ ସବୁକାଳରେ ସମଗ୍ର ଭାରତ ବର୍ଷରେ ସନ୍ଥ, ଭକ୍ତ, ଧର୍ମ ପ୍ରଚାରକ ଓ ସାହିତ୍ୟିକମାନେ ତାଙ୍କ ଦର୍ଶନ ପାଇଁ ଶ୍ରୀକ୍ଷେତ୍ରକୁ ଆସିଛନ୍ତି । ଭକ୍ତି ସଙ୍ଗୀତ ଗାନ ଓ ରଚନା କରିଛନ୍ତି । ଏହି ସଙ୍ଗୀତ ବା କୃତି ଗୁଡ଼ିକରେ ଧର୍ମ ଜଗତର ବିଚିତ୍ର ଭାବପୁଷ୍ପର ପ୍ରସ୍ଫୁଟନ ସାହିତ୍ୟ ଭଣ୍ଡାରକୁ ସୁଶ୍ରୀ ମଣ୍ଡିତ ଓ ରସାଣିତ କରିଛି । ଓଡ଼ିଆ ସାହିତ୍ୟ ଜଗତରେ ଜଗନ୍ନାଥଙ୍କୁ କେନ୍ଦ୍ରକରି ଏକ ସ୍ୱତନ୍ତ୍ର ବିଚାର ଧାରାର ଆବିର୍ଭାବ ସମ୍ଭବିଛି । ଜଗନ୍ନାଥ କୈନ୍ଦ୍ରିକ ଭକ୍ତି ଜ୍ଞାନ ମିଶ୍ରା ଭକ୍ତି ରୂପେ ପରିଚିତ ଲାଭ କରିଛି । ଏଥିରେ କବି ଜଣେ ସାଧକ—ଯୋଗ ସାଧନ ମାର୍ଗରେ ସ୍ୱୀକୃତ ସମସ୍ତ ତାତ୍ତ୍ୱିକତାର ଅବଲମ୍ବନ କ୍ରମେ ସାଧକ ନିଜକୁ ବିଶ୍ୱ ଜୀବନ ସହ ଏକୀଭୂତ କରିଦେବାର ପ୍ରଚେଷ୍ଟା ଏଥିରେ ରହିଛି ।

ଅପର ପକ୍ଷରେ ଷୋଡ଼ଶ ଶତାବ୍ଦୀରେ ଚୈତନ୍ୟଙ୍କ ଦ୍ୱାରା ପ୍ରଚାରିତ ପ୍ରେମଧର୍ମ ବା ରାଗାନୁଗା ଭକ୍ତି ଓଡ଼ିଶାରେ ଭିନ୍ନ ଏକ ଧାରଣାର ସଞ୍ଚାର କରିଥିଲା । ରାଧା-କୃଷ୍ଣଙ୍କୁ କେନ୍ଦ୍ରକରି ନାମ ସଙ୍କୀର୍ତ୍ତନ ଓ ନାମ ଜପମୂଳକ ଭକ୍ତି ଅର୍ପଣ ଥିଲା ଏହାର ମୁଖ୍ୟ ବିଭବ । ଏଥିରେ ସାଧକ କବି ନିଜକୁ ରାଧା ଭାବରେ ଅନୁଭବ କରି କୃଷ୍ଣ ପ୍ରାପ୍ତିରେ ଆଶା ରଖନ୍ତି । ରାଗାନୁଗା ଭକ୍ତି ଧର୍ମର ତର୍କ ବିହୀନ ଆତ୍ମ ସମର୍ପଣରେ ପ୍ରତିପାଦିତ ଏକ ମାନସର ଅନୁସନ୍ଧାନ ଜ୍ଞାନ ନିହିତ । ଅଚିନ୍ତ୍ୟ ପୁରୁଷଙ୍କର ସତ୍ତ୍ୱପ୍ରତି ପ୍ରେମ ପୂର୍ଣ୍ଣ ଦୃଷ୍ଟି । ଶ୍ରୀକୃଷ୍ଣ ଅଚିନ୍ତ୍ୟ ପରମେଶ୍ୱର ପୁରୁଷ; ସ୍ୱୟଂ ଭଗବାନ । ବିଭିନ୍ନ ମତର ପ୍ରବର୍ତ୍ତକମାନେ ତାଙ୍କର ଅଂଶାବତାର । ତାଙ୍କ ପାଦତଳରେ ମଣିଷ ଜୀବନର ସମସ୍ତ ବିଷୟ ଅର୍ପଣ

କରିବାକୁ ପରାମର୍ଶ ଦିଆଯାଇଛି । (ଗୀତା ୧୨/୮-୧୦) ଅର୍ଥାତ୍ ପ୍ରୀତିପୂର୍ବକ ଅସ୍ମ ସମର୍ପଣରେ ଯେଉଁମାନେ 'ମଦ୍‌ଗତ୍‌ପ୍ରାଣ' ହୁଅନ୍ତି ସେମାନେ ମୋର ପ୍ରିୟ । ଏପ୍ରକାର ଭାବ ଭକ୍ତିର ମୂଳକଥା—ରାଗାନୁଗା ପ୍ରେମ ଧର୍ମରେ ପ୍ରତିଫଳିତ ହୋଇଛି ।

"ଚର୍ମ ବେଢିଛି ସିନା ଚଉରାଶିକି । ଚଉଦ ଭୁବନ ଦିଅ ମଳିଗିରି ବାସୀକି ।"

ଭକ୍ତ ଚରଣ ଦାସଙ୍କ 'ମନବୋଧ ଚଉତିଶା'ରୁ ଏହି ପଦକୁ ଶିରୋନାମା ରୂପେ ବ୍ୟବହାର କରି ପଣ୍ଡିତ ନୀଳକଣ୍ଠ କହିଛନ୍ତି—"ଓଡ଼ିଶାରେ ଚୈତନ୍ୟ ପ୍ରେରିତ ଗୌଡୀୟ ବୈଷ୍ଣବ ଯୁଗଟି କେବଳ ଓଡ଼ିଆ ରାଷ୍ଟ୍ରନୀତି ଓ ରାଷ୍ଟ୍ରଗତିରେ ନୁହେଁ, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିରେ ମଧ୍ୟ ଘୋର ଅପଗତିର କାଳ-ଅତି ଦୁଷ୍କାଳ । ଇନ୍ଦ୍ରିୟ ସେବା ସହଜ ସାଧ୍ୟ । ଧର୍ମ ନାମରେ ପୁଣି ଆଦର୍ଶ ସାଧନାରୂପେ ତା ସ୍ୱଚ୍ଛନ୍ଦ ପ୍ରଶ୍ରୟ ପାଇଲେ ହୁଏ ଅତ୍ୟନ୍ତ ମୋହକର । ଖ୍ରୀଷ୍ଟ ୭ମ-୮ମ ଶତକରୁ ଇନ୍ଦ୍ରଭୂତି ଲକ୍ଷ୍ମୀଙ୍କରାଙ୍କ ଭଳି ଓଡ଼ିଆ ରାଜା ଓ ରାଜକନ୍ୟା ଏଥିରେ ଭୁଲି ବଙ୍ଗ ଓ ନେପାଳକୁ ଯାଇ ବ୍ରଜଯାନ ଓ ସହଜ ଯାନର ପଦକର୍ତ୍ତା ହୋଇଥିଲେ । ହୁଏତ ଏଇ ଭୁଲାଇବାର ଇଚ୍ଛାକୃତ ବା ଅଜ୍ଞାତ ସାଧନରୂପେ କୈନ ସାଧନାର ଉତ୍ପମାର୍ଗ ବା ଉଡ୍‌ଡ଼ିୟାନ ତନ୍ତ୍ରକୁ ବଙ୍ଗ ଦେଶର ସମସ୍ତ ବଜ୍ରଯାନ ପୀଠମାନଙ୍କର ଆଦି ପ୍ରେରଣା ବୋଲି ପ୍ରଚାର କରାଯାଇଥିଲା ଓ ଜଗନ୍ନାଥଙ୍କୁ ଜଗତର ପ୍ରଭୁ ବା ସ୍ୱାମୀ ରୂପ ଦେଇ ଶ୍ରେଷ୍ଠ ଜିନ୍ ବା ବୁଦ୍ଧଙ୍କ ଅବତାର ବୋଲି ପ୍ରଚାର କରାଯାଇଥିଲା ।

ତାର ପ୍ରାୟ ଦୁଇ ଶହ ବର୍ଷ ଭିତରେ ଇନ୍ଦ୍ରୀୟ ଶୃଙ୍ଖଳାର ସେହି ମୋହନ ଫାନ୍ଦରେ ପଡ଼ି ବିଜେତା କୋଶଳ କେଶରୀ ଓ ବିଶେଷରେ ଗଙ୍ଗ ସମ୍ରାଟମାନଂକ ସାମ୍ରାଜ୍ୟ ସେବାର ସଙ୍କେତ ସ୍ୱରୂପ ବିଶାଳ ଓ ବିରାଟ ଗଠନ-ସ୍ଥାପତ୍ୟର ଅଳଂକାର ରୂପେ ଓଡ଼ିଶାର ପବିତ୍ର ଓ ସ୍ୱାଭାବିକ ପାରମ୍ପରିକ ଖୋଦନ କଳା, କ୍ରମେ ସେହି ତଥା କଥିତ ଧର୍ମ-ସମ୍ମତ ଯୌନଚର୍ଯ୍ୟାର ମୂର୍ତ୍ତିମନ୍ତ ଚିତ୍ରରେ ବିକଟ ଓ ବିଭତ୍ସ ହେବାର ବାଟ ଧରିଥିଲା । ଏଥିମଧ୍ୟରେ ଦ୍ୱୈତ ଧର୍ମର ପ୍ରପତ୍ତି ପରାୟଣ ଦେବଦାସୀ ସେବିତ ଓ ବହୁଦାରାରତ ଅଲବାର ପନ୍ଥୀ ସେହି ଗଙ୍ଗ ସମ୍ରାଟମାନଙ୍କ କାଳରେ ଆସିଲେ, ସହଜିଆ ଧର୍ମୀ, ପରକୀୟା ପ୍ରେମୀ ଜୟଦେବ । ଓଡ଼ିଆ ଶିଷ୍ଟମାନଙ୍କ ମଧ୍ୟରେ ବିଶେଷତଃ ରାଜା ଓ ଆଗ୍ରହରେ ରାଜାଙ୍କୁ ଅନୁକରଣ କରୁଥିବା ଲୋକଙ୍କ ଭିତରେ ବହୁ ବିବାହ ଓ ବହୁ ନାରୀ ଭୋଗ ସଙ୍ଗେ ଗୋପୀ-କୃଷ୍ଣ ଓ ରାଧା-କୃଷ୍ଣ ନାମଧରି ଏହି ପରକୀୟା ପ୍ରେମଧର୍ମ ପଶିଥିଲା । କପିଳେନ୍ଦ୍ର ଦେବଙ୍କ କାଳର ବିରାଟ ସାହିତ୍ୟିକ ଓ ସାଂସ୍କୃତିକ ପୁନରଭ୍ୟୁଦୟ ବେଳେ, ଜଗନ୍ନାଥ ଧର୍ମର ପୁଣ୍ୟ ପ୍ରଭାବରେ ଏହି ଅତି-ପ୍ରାକୃତ ଧର୍ମ ଟିକିଏ ହୁଏତ ମଳିନ ହୋଇ ଆସିଥିଲା । ଏତିକି ବେଳକୁ ପୁଣି ଆସିଲେ ଚୈତନ୍ୟ" (ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ୨ୟ ଭାଗ, ପୃ-୪୭୨-୪୭୪)

ପଣ୍ଡିତ ନୀଳକଣ୍ଠଙ୍କର ଏ ଆଲୋଚନାରୁ ଓଡ଼ିଶାରେ ପ୍ରଚଳିତ ଜ୍ଞାନବାଦୀ ଭକ୍ତିର ନିମ୍ନ ଅବକ୍ଷୟର ରୂପ ପ୍ରକାଶ ହୁଏ । ତାର ବିକଳ୍ପରେ ପରକୀୟାର ପ୍ରଭାବ ଅନୁଭୂତ ହୁଏ । ଯଥାର୍ଥରେ ଚୈତନ୍ୟ ନୁହନ୍ତି ବରଂ ଜୟଦେବ ଗୀତ ଗୋବିନ୍ଦ ରଚନା ମାଧ୍ୟମରେ ଏହି ପରକୀୟା ପ୍ରେମର ଉନ୍ମେଷ ଘଟାଇଛନ୍ତି । ଚୈତନ୍ୟଙ୍କ ସମୟରେ ନିମ୍ନୟରେ ତାହା ପଲ୍ଲବିତ ହୋଇଛି ମାତ୍ର ।

ରାୟ ରାମାନନ୍ଦଂକ ଉତ୍ତର ଚୈତନ୍ୟଙ୍କୁ ମୁଗ୍ଧ କରିବା ଘଟଣାଟିକୁ ପରକୀୟା ପ୍ରେମଧର୍ମର ଦାର୍ଶନିକ ସିଦ୍ଧାନ୍ତ ନେବାରେ ଚୈତନ୍ୟଙ୍କୁ ସାହାଯ୍ୟ କରିଛି, ପଣ୍ଡିତ ନୀଳକଣ୍ଠ ଏପରି ସିଦ୍ଧାନ୍ତକୁ ଯୌନଚର୍ଯ୍ୟା ଶୃଙ୍ଗା ଭକ୍ତିର ବୈଶିଷ୍ଟ୍ୟ ବୋଲି ଗ୍ରହଣ କରି ନେଇଛନ୍ତି । ବଙ୍ଗଅତୁ ଓଡ଼ିଶାରେ ଏହି ଏର୍ମର ପ୍ଲାବନୀ ବନ୍ୟା ଓଡ଼ିଶାକୁ ଅଭିଭୂତ କରି ରଖିଛି ଓ ଓଡ଼ିଶାର ଯଥାର୍ଥ ପ୍ରାଣପ୍ରବାହ ବନ୍ଦ କରିଦେଇଛି ବୋଲି ସେ ଧରି ନେଇଛନ୍ତି । ଏହାଦ୍ୱାରା ଓଡ଼ିଆ ସାହିତ୍ୟର ଗତ ଅନୁକରଣର କୃତ୍ରିମତାରେ ବିକୃତ ହୋଇଛି ବୋଲି ସେ କହିଛନ୍ତି । (ମଥୁରାମଙ୍ଗଳ ଓ ମଧ୍ୟଯୁଗୀୟ ଭକ୍ତି କାବ୍ୟର ସାମାଜିକ ଅଭିବ୍ୟକ୍ତି; ପି. ଏଚ· ଡ଼ି·ଥେସିସ୍ (ପାଣ୍ଡୁଲିପି) ଡକ୍ଟର ବଳଭଦ୍ର ସାହୁ ପୃ-୭୨-୭୫) ।

କବି ଜଗନ୍ନାଥ ପାଣିଙ୍କ 'ଗୋପକେଳି' ଓ 'ବ୍ରଜ ମନୋହର' କାବ୍ୟ ଦୁଇଟିର ଭଣିତା ପର୍ଯ୍ୟାୟକୁ ଦୃଷ୍ଟିରେ ରଖି ନିଃସନ୍ଦେହରେ କୁହାଯାଇ ପାରେ ଯେ କବିଥିଲେ ଜଣେ ପ୍ରମୁଖ ରାଗାନୁଗାଭକ୍ତିର ସାଧକ । ସଖୀ/ଗୋପୀ ଟାଧାଭାବରେ ଭାବିତ ଭକ୍ତି ହେଉଛି ପ୍ରେମ ଭକ୍ତି ଓ ଶ୍ରେଷ୍ଠ ଭକ୍ତି । ଏହି ପରିପ୍ରେକ୍ଷୀରେ କବିଙ୍କର 'ବ୍ରଜମନୋହର' କାବ୍ୟର କେତୋଟି ଉକ୍ତି ପ୍ରଣିଧାନ ଯୋଗ୍ୟ—

(କ) "ରାଧାଭାବ ଅନୁଭବ କରି ଭାବେ ଜଗନ୍ନାଥ ବ୍ରହ୍ମଜ୍ଞ
ନାରାୟଣ ବ୍ରହ୍ମ ପାରାୟଣ ଘନ-
ଶ୍ୟାମ ଯୋଗେ ପ୍ରବନ୍ଧ ସଞ୍ଚରି ଗୋ ।" (୧୦,୧୯)

କିମ୍ବା (ଖ) "ଗୋପାଙ୍ଗନା ଭଗତ ଭାବେ ଭାବି ମୋ ମତି
ଜୀବନ୍ତ ଜବ ବାଞ୍ଛା ସ୍ନେହ ସେ ।" (୨୧/୧୯)

କିମ୍ବା (ଗ) "କୃପାନିଧି କୃପା କି ହେବ
ରାଧା ଭାବ ଭାବି ଭାବେ ମୋ ଜୀବ ଯିବ ।" (୨୩/୧୪)

କବିଙ୍କ ବଚନ ଭଙ୍ଗୀରେ ମଧ୍ୟ ଏହା ସ୍ୱୀକୃତ—

ବ୍ରଜ ମନୋହର ବୋଲି ଯେହୁ ଗୀତ ନାମ
ଗୋପାଙ୍ଗନା ଭକ୍ତି ରାସ ରସ ପ୍ରେମ ଧାମ । (୩୧/୨୭)

ତୁମ୍ଭ ଲାଗି ଗୁରୁ ଗୌରବ ଲାଜ ମହତ ତେଜି
ତୁମ୍ଭ ପ୍ରେମେ ମଜ୍ଜି କୁଳଟା ହେଲୁ କୁଳ ନଭଜି । (୩୦।୨୧)

ଏହି ଭକ୍ତିରେ ପ୍ରେମ ହେଉଛି ମୂଳମନ୍ତ୍ର । ଜ୍ଞାନମିଶ୍ରାଦୃଷ୍ଟିରେ ଯେଉଁ ଭଗବାନ ଜଗତସ୍ରଷ୍ଟା ଅନ୍ତର୍ଯ୍ୟାମୀ ବା ପରମପୁରୁଷ, ରାଗାନୁଗାମତାବଲମ୍ବୀଙ୍କ ପାଇଁ ସେ ପ୍ରେମମୟ ପୁରୁଷ—ପ୍ରାଣର ସଖା ଓ ସ୍ୱାମୀରୂପୀ । ସର୍ବଗୁଣରେ ମୂର୍ତ୍ତିମନ୍ତ । ସେ ଏକଧାରରେ ଅବ୍ୟୟ, ଅକ୍ଷୟ, ସତ୍ୟ ଓ ସନାତନ; ପୁଣି ଅପ୍ରାକୃତ ପ୍ରେମଲୀଳାର ଦ୍ୟୋତନା ଦଅନ୍ତି । ଏ ପ୍ରକାର ଦୃଷ୍ଟିଭଙ୍ଗୀ ସମସ୍ତ ରାଗାନୁଗା ସାଧକଙ୍କ କ୍ଷେତ୍ରରେ ସମାନ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଭକ୍ତଚରଣ, ଅଭିମନ୍ୟୁ, ଗୋପାଳକୃଷ୍ଣ, ବନମାଳୀ ପ୍ରଭୃତି ରାଗାନୁଗା ଭକ୍ତିର ପରମ ଉପାସକ । କବି ଜଗନ୍ନାଥ ପାଣି ଉକ୍ତ ପରମ୍ପରାର ଅନ୍ୟତମ ଯୋଗ୍ୟ ଦାୟାଦ ।

କବିଙ୍କ 'ବ୍ରଜମନୋହର' କାବ୍ୟରେ ଉକ୍ତ ଦୃଷ୍ଟି ପ୍ରସଙ୍ଗଟି ଅଲୋଚିତ ହେବା ପୂର୍ବରୁ ଭାରତୀୟ କାବ୍ୟ ସାହିତ୍ୟରେ ଭକ୍ତି ଧର୍ମର ଅନନ୍ୟ ଧାରା କୃଷ୍ଣଭକ୍ତି ସଂପର୍କରେ ସମ୍ୟକ୍ ସୂଚନା ଏ କ୍ଷେତ୍ରରେ ଅପ୍ରାସଙ୍ଗିକ ହେବ ନାହିଁ । ଭାରତୀୟ ଜନ ଜୀବନରେ 'କୃଷ୍ଣ'ବହୁ ଆଦରଣୀୟ ନାମ । ସେହିପରି ଭାରତୀୟ ସାହିତ୍ୟରେ ନାମର ଶତ୍ରୁ-ଚନ୍ଦ୍ରନ ପରିଦୃଷ୍ଟ । ସର୍ବୋପରି କୃଷ୍ଣ ସ୍ୱୟଂ ଭଗବାନ ଏବଂ ସାମାଜିକ ମର୍ଯ୍ୟାଦାର ଗତିମୁକ୍ତି ଦାତା । ସେ କେବଳ ବୈକୁଣ୍ଠବାସୀ ପରଂ ବ୍ରହ୍ମ ନୁହନ୍ତି, ସୃଷ୍ଟିକର୍ତ୍ତା ଓ ଜୀବନର ସ୍ଥିତି ଅବସ୍ଥାର ନିୟନ୍ତକ । ପୁନଶ୍ଚ ସେ ଲୀଳାମୟ ସମସ୍ତ କଳା କୁଶଳତାରେ ତାଙ୍କର ବିହାର ଓ ସେହି ଐଶ୍ୱର୍ଯ୍ୟର ପରିବ୍ୟାପ୍ତି । ଲୀଳା ବିଳାସରେ ଅଛି ଆଧ୍ୟାତ୍ମିକ ଅନୁଭୂତି । ତାହା ପୁଣି ଅଲୌକିକ ଓ ଅନନ୍ୟ । ଅପର ପକ୍ଷରେ ସେ ପୁଣି ବୀର ଓ ପରମନୀତି ନିଷ୍ଠକଚର୍ମୀ । ଚରିତ୍ରାଚରଣରୁ କେବଳ ନୁହନ୍ତି—କଥାର ବିକ ଭୂଲାଇ ଦଅନ୍ତି ବୋଲି ।

ହିନ୍ଦୁର ଉଭୟ ଦାର୍ଶନିକ ଓ ସାଂସ୍କୃତିକ ଚିନ୍ତାଧାରେ କୃଷ୍ଣ ଏକ ଶାନ୍ତକାନ୍ତ ମୂର୍ତ୍ତି । ହିନ୍ଦୁର ବୌଦ୍ଧିକ ଓ ସାମାଜିକ ଚିନ୍ତାରେ ସେ ହେଉଛନ୍ତି ଅନ୍ୟତମ ପ୍ରତୀକ ଓ ବହୁ ତାତ୍ତ୍ୱିକ ବିଶ୍ଳେଷଣର ସେ ମୂଳଧାର । ପରଂବ୍ରହ୍ମ ରୂପେ ହେଉ ବା ସଖା-ସହୋଦର ବା ପୁତ୍ର ବା ଠାକୁର ରୂପେ ହେଉ ତାଙ୍କର ବହୁବିଧ ରୂପର ତାତ୍ତ୍ୱିକ ଓ ସାମାଜିକ ବିଶ୍ଳେଷଣ ଘଟିଛି । କୃଷ୍ଣ କଥାର ତାତ୍ତ୍ୱିକ ବା ଦାର୍ଶନିକ ବିଶ୍ଳେଷଣ ଘଟିଛି ବିଭିନ୍ନ ବୈଷ୍ଣବ ଆଚାର୍ଯ୍ୟ ଓ ଗୋସ୍ୱାମୀଙ୍କ ଦ୍ୱାରା । ସେମାନଙ୍କ ମଧ୍ୟରେ ନିମ୍ବାର୍କ, ବଲ୍ଲଭ ଓ ଚୈତନ୍ୟ ଥିଲେ ପ୍ରଧାନ ।

ଶ୍ରୀମଦ୍ ଭାଗବତ ପୁରାଣର ଦାର୍ଶନିକ ତତ୍ତ୍ୱକୁ ଭିତ୍ତିକରି ଭକ୍ତିବାଦର ବିଭିନ୍ନ ସଂପ୍ରଦାୟ-ଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତ, ଶୁଦ୍ଧାଦ୍ୱୈତ ଓ ଅଚିନ୍ତ୍ୟ-

ଭେଦାଭେଦର ବାଖ୍ୟା ଓ ବିଶ୍ଳେଷଣ କରାଯାଇଛି । ଏହାଦ୍ୱାରା ରାମ-ସୀତା ଏବଂ ରାଧା-କୃଷ୍ଣ ଯୁଗଳ ଉପାସନାର ଏକ ସୁଚନ୍ତିତ ଧାରା ସୃଷ୍ଟି ହୋଇଛି । ମଧ୍ୟଯୁଗୀୟ ଧର୍ମ-ଧାରାରେ ବିଷ୍ଣୁ, ରାମ ଓ କୃଷ୍ଣ ଉପାସନା ମଧ୍ୟରୁ କୃଷ୍ଣ ଓ ପରବର୍ତ୍ତୀ ସମୟରେ ରାଧା-କୃଷ୍ଣ ଉପାସନାର ବ୍ୟାପକ ପ୍ରସାର ଘଟିଛି । ଭକ୍ତିର ଦୁଇ ବିଭବ ବୈଧୀ ଓ ରାଗାନୁଗା ରାଧା-କୃଷ୍ଣ ଉପାସନାକୁ ଜନପ୍ରିୟ କରିବାରେ ବଳିଷ୍ଠ ଭୂମିକା ଗ୍ରହଣ କରିଛି । ଏହା ବିଷ୍ଣୁ କିମ୍ବା ରାମୋପାସନା କ୍ଷେତ୍ରରେ ସମ୍ଭବପର ହୋଇନାହିଁ ।

'ବ୍ରଜ ମନୋହର' କାବ୍ୟ ମୁଖ୍ୟତଃ କୃଷ୍ଣ କଥା ଉପରେ ଆଧାରିତ । କୃଷ୍ଣ ଜନ୍ମଠାରୁ କଂସବଧ ପର୍ଯ୍ୟନ୍ତ ଏହାର ବ୍ୟାପ୍ତି । ୩୧ଟି ଛାନ୍ଦ ମଧ୍ୟରେ କବି କଳ୍ପନାର ସମସ୍ତ ରୂପ ବିଭବ ଗୁମ୍ଫିତ । କୃଷ୍ଣ ବିଷୟକ କାହାଣୀକୁ ଆଧାରକରି ଓଡ଼ିଶାରେ ବହୁ କାବ୍ୟ-କବିତା ରଚିତ ହୋଇଛି । କବିଙ୍କ 'ବ୍ରଜ ମନୋହର' ଉକ୍ତ ପରମ୍ପରାର ଏକ ସୁଖଦ ପୁନରାବୃତ୍ତି । ବିଷୟବସ୍ତୁରେ ନୂତନତା ଅପେକ୍ଷା ବରଂ କବିଙ୍କର ନିଜସ୍ୱ ଶୈଳୀରେ ଉତ୍କର୍ଷ ପ୍ରତିପାଦିତ ହୋଇଛି । ଅପୂର୍ବ କାବ୍ୟ ସଂହତି, ଛନ୍ଦ, ଅଳଙ୍କାର, ଓ ଶାନ୍ତରସ ପରିବେଷଣ କରି କବି ଜଗନ୍ନାଥ ପାଣି ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ ଉପେନ୍ଦ୍ର, ଦୀନକୃଷ୍ଣ, ଭକ୍ତଚରଣ, ସଦାନନ୍ଦ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣ, ବନମାଳୀ ପ୍ରଭୃତିଙ୍କ ଲୋକପ୍ରିୟତା ସଦୃଶ କବି ଓଡ଼ିଆ ଭକ୍ତି ସାହିତ୍ୟରେ ଅନୁରୂପ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇଛନ୍ତି ।

ଗୋପ, ଗୋପାଳ, ଗୋପାଙ୍ଗନା—ଗୋପପୁରର ସୁନ୍ଦରତ୍ରୟୀ । ଗୋପପୁର ସୁରମ୍ୟ ପ୍ରକୃତିର ଅନ୍ତରଜଗତ । ସେଥିରେ ଗୋପାଳ ଗୋକୁଳକୁ ଗୋମତିରୂପୀ ଅମୃତ ପ୍ଳାବନ କରିଛି—ସେ ଗୋକୁଳର ସୁନ୍ଦର । ତାଙ୍କର ପାଇଁ ଗୋପର ଅଙ୍ଗନା କୂଳ । ଗୋପଙ୍ଗନା କୌଣସି ଏକ ନାରୀ ନୁହେଁ—ଏକ ନାରୀ ମଣ୍ଡଳୀ, ନିର୍ଭେଦୀପ୍ତି-କାରିଣୀ ନକ୍ଷତ୍ର ପୁଞ୍ଜପରି । ଗୋପ ଉଦ୍ୟାନର ଗୁଚ୍ଛ କୁସୁମାବଳୀ । ଗୋପାଳ ସେପରି ସେହି ଉଦ୍ୟାନର ଏକ ମଧୁପ ।

ପାତ୍ର ଭେଦରେ ଗୋପୀମାନେ ପ୍ରେମିକା ନୁହନ୍ତି । ଶ୍ରୀକୃଷ୍ଣହିଁ ଜୀବନର ଏକମାତ୍ର କାମ୍ୟ ଓ କାରଣ । କାମକେଳୀ କୁଶଳା ହେବାର ବାସନା ସେଥିରେ ନାହିଁ; ଅଛି କାମନାର ଅନଳପୀଡ଼ାରୁ ପରିତ୍ରାଣ ଜନିତ ପରମାର୍ଥିକ ଆନନ୍ଦ । ଗୋପ ଭାବରେ ଗୋପୀଙ୍କୁରେ । ଧୋପଭାବ ହିଁ ଗୋପୀମାନଙ୍କର ଲୀଳା ପ୍ରଧାନ ପ୍ରାଣର ସଙ୍କେତ । ସେଥିରେ ଅଧିଷ୍ଠାତା ଗୋପାଳ । କୃଷ୍ଣଙ୍କ ପୁଲକରେ ଗୋପୀବୃନ୍ଦ ପୁଲକିତ । ଆତ୍ମସୁଖ ଅପେକ୍ଷା କୃଷ୍ଣସୁଖ ବାଞ୍ଛାରେ ସେମାନଙ୍କର ଆନନ୍ଦ । କୃଷ୍ଣ ସେମାନଙ୍କର ଚକ୍ଷୁ ସଦୃଶ । କୃଷ୍ଣ ବିହୁନେ ଗୋପୀମାନେ ଅନ୍ଧ । କୃଷ୍ଣ ଓ ଗୋପପୁର ସମ୍ପୃକ୍ତି ଭାବରେ ଏକ ଜୀବନ ବୋଧର ପ୍ରତୀକ । ଗୋଷ୍ଠିକୁ ତ୍ୟାଗକରି ଅନ୍ୟହିର କଳ୍ପନା କରିବା ଗୋପାଙ୍ଗନାଙ୍କ

ପକ୍ଷରେ କଷ୍ଟ କର । ପୂର୍ଣ୍ଣତାରେ ଶୂନ୍ୟତା ଅଚନ୍ତନୀୟ । କୃଷ୍ଣଙ୍କ ତୃପ୍ତି ପାଇଁ ରାସମଣ୍ଡଳ ସରଚନା କରିବା ସେମାନଙ୍କର ଅତ୍ୟତମ କର୍ମ । କୃଷ୍ଣାଙ୍ଗର ବିଭୂଷଣ ତାଙ୍କ ନିତ୍ୟ କର୍ତ୍ତବ୍ୟ ।

ପ୍ରେମ ମଧ୍ୟରେ କାନ୍ତା ପ୍ରେମ ଶ୍ରେଷ୍ଠ । ପରକୀୟା ପ୍ରେମରେ କାନ୍ତା ପ୍ରେମର ଉତ୍କର୍ଷ ନିହିତ । ଗୋପୀମାନଙ୍କର ପ୍ରେମ ପରକୀୟା ପ୍ରେମ । ଅକଳୁଷିତ ଓ ଅମିଶ୍ରିତ । ନିର୍ମଳ ପ୍ରେମ । ପ୍ରେମର ପରାକାଷ୍ଠା ସ୍ୱକୀୟା ଅପେକ୍ଷା ପରକୀୟାରେ ଅଧିକ । ବିଧି-ବିଧାନ ରହିତ ପ୍ରେମ ପରକୀୟା ପ୍ରେମ-ଗୋପବାଳାଙ୍କ ଆଦରର ପ୍ରେମ । ପତି ଓ ଗୁରୁଜନଙ୍କ ବଚନ ଅଗ୍ରାହ୍ୟ କରି ବ୍ରଜବାଳାମାନେ କୃଷ୍ଣଙ୍କ ପରକୀୟା ପ୍ରେମରେ ଏପରି ମଜ୍ଜି ଗଲେ ଯେ ସେମାନଙ୍କୁ କୁଳଟା କୁହାଗଲା । ସୁତରାଂ ଗୋପୀମାନଙ୍କ ପରକୀୟା ପ୍ରେମର ନମୁନା ହେଲା ସାମାଜିକ ଆଦର୍ଶର ପରିପନ୍ଥୀ ।

ଗୋପୀମାନେ କୃଷ୍ଣ ବିରହର ପ୍ରତି ମୂର୍ତ୍ତି । ସେମାନଙ୍କର ଦେହ ଓ ମନ, ଜୀବନ ଓ ଯୌବନର ଐଶ୍ୱର୍ଯ୍ୟକୁ ସାର୍ଥକ କରିଛି ବିରହ । ସେମାନଙ୍କର ବିରହାବସ୍ଥା ପୂର୍ବରାଗ, ମାନ, ପ୍ରେମ ବୈଚିତ୍ର୍ୟ ଓ ପ୍ରବାସ ମାଧ୍ୟମରେ ପ୍ରକାଶିତ । ରାମ-କୃଷ୍ଣଙ୍କ ମଥୁରା ଯିବା ସମ୍ବାଦ ଶ୍ରବଣକରି ବ୍ୟସ୍ତ ବିବ୍ରତ ହୋଇ ପଡ଼ିଛନ୍ତି । ଏପରିକି କୃଷ୍ଣଙ୍କ ବିନମୟରେ ସେମାନେ ମରଣ କରଣ କରିବାକୁ ବି ପ୍ରସ୍ତୁତ । ଗୋପାଙ୍ଗନା ମାନଙ୍କ ବିରହ ଜ୍ୱାଳାର ଇଙ୍ଗିତ ଦେବାକୁ ଯାଇ କବି ଲେଖିଛନ୍ତି—

"ଅମ୍ଭ ଜୀବେଶ୍ୱର ତୁମ୍ଭେ ହରି        ଆମ୍ଭେ ତୁମ୍ଭ ପାଦ ପରିଚାରୀ
କାହିଁକେ ଅନ୍ତର କଲେ ସ୍ନେହ ଶରୀର
ନିଷ୍ଠେ ତେଜିବୁ ସତ୍ୟ ଆମ୍ଭର, ହେ ନାଗର ।
ଆମ୍ଭେ ଅବଳା ସରଳା ଜାତି        ତୁମ୍ଭ ପ୍ରେମ ମଦେ ଅଛୁ ମାତି
ସକଳ ସଂସାର ଆଶା ଭରସାକୁ
ତେଜି ମଜ୍ଜି ଅଛୁ ତୁମ୍ଭ ପ୍ରୀତି, ହେ ନାଗର ।"

(୧୯/୧୧-୧୨)

କିମ୍ବା

"କେ ଡାକେ ଉଚ୍ଚ କରି        ଆହେ ମୁରଲୀ ଧାରୀ
ସ୍ନେହେ ଦାଣ୍ଡେ କାହିଁ ପାଇଁ
କହିଲ ଦେବକଙ୍କରେ        ବିନା ଅପରାଧରେ
ଦଣ୍ଡ ବ୍ରହ୍ମାଣ୍ଡ ନାଥ ହୋଇ ହେ, କୃପାସିନ୍ଧୁ
ଆମ୍ଭେ ସକଳ ବ୍ରଜାଙ୍ଗନା । ମରିବୁ ତୁମ୍ଭ ଲାଗି ସିନା
ଜଗତ ପତି ହୋଇ        ହେବେ ଅଙ୍ଗତ ବହି
ବାରେ ସ୍ନେହ କଲିଲି କାମନା ହେ ।"        (୨୧/୮)

× × ×

"ବନେ ବୁଲିଲେ ବାଇ ପରି ସେ, ବ୍ରଜନାରୀ
ନବ ତମାଳ ପାଦପକୁ । ଧରନ୍ତି ବିସ୍ତାରି କୋଳକୁ
ହେ ବ୍ରଜରାଜସୁତ ଆତ୍ମ କାମନା ହତ
କରି ନୁଗ୍ଧଅ ଶରୀରକୁ ସେ ।" (୨୧।୯)

ସେହିପରି ରାଧାଙ୍କ ପ୍ରେରିତ ସମ୍ବାଦରେ ବିଦଗ୍ଧ ହୃଦୟର କ୍ଷତ ଚିହ୍ନ ଓ ଯନ୍ତ୍ରଣା ଜର୍ଜରିତ ଓନ୍ମତ୍ତ୍ୟର ହାହାକାର ସ୍ପଷ୍ଟ ରୂପେ ବାରି ହୋଇଯାଏ । ସତେ ଯେପରି ବେଦନା ବିଗଳିତ ହୃଦୟର ଦୁଃଖ ଦୃଷ୍ଟି ଆଗରେ କଳ କଳ ନାଦମୀ ଗିରିଝରଣା ପରି ବହି ଯାଇଛି ସମସ୍ତ ପ୍ରତିବନ୍ଧକକୁ ଲଙ୍ଘନ କରି । କବି ଉଦାତ୍ତ କଣ୍ଠରେ ଗାଇଛନ୍ତି—

"ଦୀନବନ୍ଧୁ ତନୟା ତଟରେ ପଡ଼ିଗଲେ ଯେ ବନ୍ଧୁ ଭେଟରେ
ସେ ଦିନୁ ମୋ ମନ ଧ୍ୟାନ ଚଇତନ୍ୟ
ରହି ଅଛି ତାଙ୍କ ନିକଟରେ ଗୋ ସଜନୀ ।

ଯାଇ କହିବ ଶ୍ୟାମବନ୍ଧୁଙ୍କୁ ଦୟାମୟ ଶ୍ରୀ କୃପାସିନ୍ଧୁଙ୍କୁ
ମୁହିଁ ଦୀନ ନାରୀ ଅଛି ଆଶା କରି
ତାଙ୍କ ଅଭୟ ପାଦାମ୍ବୁଜକୁ ଗୋ ସଜନୀ ।

ଗୁରୁ ଗୌରବ ଲାଜ ମହତ କୁଳଶୀଳ କାନ୍ତ ସୁତ ବିତ
ସବୁ ପରିହରି ଅଛି ମୁଁ ଆଚରି
ତାଙ୍କ ପଦ ପରିଚର୍ଯ୍ୟା ବ୍ରତ ଗୋ ସଜନୀ ।"
(୧୦।୧୩-୧୫)

କିନ୍ତୁ କୃଷ୍ଣଙ୍କ ଉତ୍ତରରେ କବି କେବଳ ଦେହ ଭୋଗର ଲାଳସା ଓ ପ୍ରେମିକା ରୂପ ଲାବଣ୍ୟର ପ୍ରଶଂସା କରିଛନ୍ତି—

"ମଦନ ବଲ୍ଲରୀ ଲଭିବାରେ ଲୋଭୀ ହୋଇ ଭ୍ରମେ ଦିନ ସରିଏ
ସୀମନ୍ତିନୀ ରତ୍ନ ଦେଇ ପ୍ରୀତି ଧନ ଦିଲୁ ତାପହରୁ ଅବସ୍ୱେ
ଦୂତି ଗୋ, କହିବୁ ପ୍ରେମ ଉନ୍ମାଦୀକ,
ତା କୁଚ ଶମ୍ଭୁ ନିକଟରେ ଜଣାଇ ବିନାଶ୍ରୁ ସ୍ୱେ କାମ ବାଦୀକ ।"

ନିର୍ଜନ ବନଭୂମି, ଯମୁନାର ସିକତାରେ ଶୀତଳ ଜଳ ଧାର, ପୁଷ୍ପିତ କଦମ୍ବ କୁଞ୍ଜ ଆଦି ପ୍ରାକୃତିକ ପରିବେଶ ଦେଇ ପ୍ରେମ ହୋଇଛି ମଧୁର ଓ ମହନୀୟ । ପ୍ରେମ ଉଭୟ ମାନସିକ ଓ ଦୈହିକ । ଦୈହିକ ସ୍ତରରେ ଘଟିଲେ ପ୍ରେମର ଶାଶ୍ୱତ ଭାବ ନଷ୍ଟ ହୁଏ । ଗୋପୀ ପ୍ରେମରେ ତାହା ଘଟି ନାହିଁ । ଇନ୍ଦ୍ରିୟରୁ ଇନ୍ଦ୍ରିୟେତର ହୋଇଛି । ଇନ୍ଦ୍ରିୟର କାମନାରେ ସ୍ଥିର ଓ ସ୍ଥାଣୁ ରୂପେ ଦେହକୁ ଉଦ୍ଦୀପ୍ତ କରି ନାହିଁ, ବରଂ

ଦେହରୁ ଉର୍ଦ୍ଧ୍ୱକୁ ଉଠି ଯାଇଛୁ । ଜୀବଜଗତ ପ୍ରେମ ପାଶରେ ଆବଦ୍ଧ । ଜୀବ ଓ ଜଡ଼ ପ୍ରେମ ଦ୍ୱାରା ଦ୍ରବୀଭୂତ ହୋଇ ପାରିଲେ ପ୍ରେମର ଉତ୍କର୍ଷ ବଢେ । ରତ୍ୟୋତ୍ପତ୍ତି ପାଇଁ ଆଲମ୍ବନ ବିଭାବକୁ ଉଦ୍ଦୀପନ ବିଭାବ ସାହାଯ୍ୟ କରେ । ଅଙ୍ଗ ଶୋଭାକୁ କାମୋଦ୍ଦୀପକ କରାଏ । ଚୂଡ଼କ୍ତି ଓ ସଲାପ ଭିତରେ ଉତ୍ତରଣ ମୁଖୀ କରାଇ ଶେଷରେ ମିଳନରେ ସହାୟକ ହୁଏ । ସାକ୍ଷାତ୍ ଦର୍ଶନ ପାଇଁ ସଙ୍କେତ ସ୍ଥଳୀ ନିର୍ଣ୍ଣୟ କରେ । ହୃଦୟରେ ଯନ୍ତ୍ରଣା ଲାଘବ ପାଇଁ ଆବଶ୍ୟକ ପଡ଼େ ପ୍ରେମ ପତ୍ରର ବା ଦୂତ/ଦୂତୀର । ପ୍ରେମ ଜୀବନ ପାଇଁ ଏକ ଆକର୍ଷଣ । ବଞ୍ଚି ରହିବା ପାଇଁ ଏକ ପ୍ରେରଣା । ପରସ୍ପର ଭିତରେ ପୁଣି ଦୁହିଁଙ୍କର ଏକ ସାଲସ୍ ଯୋଗ୍ୟ ସମୟ ଅତିବାହିତ କରିବାର ବିଶ୍ୱାସ ବୋଧ ।

କୃଷ୍ଣ କାହାଣୀରେ ପାର୍ଥିବ ପ୍ରେମର ଅଭାବ ନାହିଁ । ଭାରତୀୟ ପ୍ରେମ ଶାସ୍ତ୍ରରେ କାହାଣୀର କମନୀୟ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଭାଗବତ ଗ୍ରନ୍ଥରେ ପ୍ରଥମେ ହିଁ ଶ୍ରୀକୃଷ୍ଣଙ୍କ ଅଲୌକିକ ପ୍ରେମକୁ ଅବତାର ଲୀଳା କୁହାଯାଇଛି । ସେ ଲୀଳାପ୍ରିୟ । ଲୀଳା ବିଳାସରେ ତାଙ୍କ ଆତ୍ମା, ବିଦଗ୍ଧ । ଲୀଳା ସବଳ ପ୍ରେମତତ୍ତ୍ୱ ଓ ପ୍ରେମର ଅବଗାହନରେ ଉତ୍କର୍ଷ ପ୍ରମାଣ କରେ । ଏହା ଜୀବନର ମୌଳିକ ଓ ପ୍ରଥମ ଉପାଦାନ । ଜୀବନର ସବୁ କାମନା ଓ ଯାତନା ମଧ୍ୟରେ ପ୍ରେମହିଁ ଶାଶ୍ୱତ ଏକ ଆଚରଣ । ଜୀବନର କେନ୍ଦ୍ର ବିନ୍ଦୁରେ ଏହି ପ୍ରେମହିଁ ସମସ୍ତ ସମସ୍ୟା ଓ ଜଞ୍ଜାଳକୁ ଅବଶେଷକରି ଜୀବନର ଶୁଦ୍ଧ ଓ ମନୋରମ ବିଜୟ ସଙ୍ଗୀତ ଗାନକରେ । 'ବ୍ରଜମନୋହର' କାବ୍ୟରେ ଏହି ପ୍ରେମଭିତ୍ତିକ ଜୀବନବୋଧର ପ୍ରକାଶ ବ୍ୟାପକ ଓ ଗମ୍ଭୀର । ଏହି ପ୍ରସଙ୍ଗରେ କବି ରମାକାନ୍ତ ରଥଙ୍କ ଉକ୍ତି ସ୍ମରଣୀୟ—

"ସ୍ଥୂଳ ଓ କାୟିକ ଶକ୍ତିଦ୍ୱାରା ଏକ ଅସଫଳ ଓ ଅସୁନ୍ଦର ଜୀବନ ମାର୍ଗକୁ ଲକ୍ଷ୍ୟ କରାଯାଇ ପାରିବ ନାହିଁ ଏବଂ ତାର ଗୌରବହୀନ ସମାପ୍ତି ଅବଶ୍ୟମ୍ଭାବୀ । × × × × । କଂସର ମୃତ୍ୟୁରେ କୌଣସି ଆଡ଼ମ୍ବର ବା ଅସାଧାରଣତା ନାହିଁ । ତାର ଉଗ୍ର ଅସ୍ଫାଳନମୟ ଅହଂ ସର୍ବସ୍ୱ ଜୀବନର ଚକ୍ରଚକ୍ୟ ତୁଳନାରେ ତାର ମୃତ୍ୟୁ ଅତ୍ୟନ୍ତ ବିବର୍ଣ୍ଣ । ଅତ୍ୟନ୍ତ ମାମୁଲି । ଏହି ବିବର୍ଣ୍ଣତାହିଁ ସେ ଜୀବନର ଅସଲ ରଙ୍ଗ, × × × × ।

"ଏପରି ଏକ ଅସଫଳିତ ଓ ବ୍ୟର୍ଥ ଜୀବନ ଅପେକ୍ଷା ପ୍ରେମମୟ ଭାବର ଆଦାନ ପ୍ରଦାନ ଦ୍ୱାରା ସମୃଦ୍ଧ ଜୀବନର ଉତ୍କର୍ଷ କାବ୍ୟରେ ବଳିଷ୍ଠ ଭାବେ ପ୍ରତିପାଦିତ । ଯଶୋଦା ଓ ଗୋପୀମାନେ ଏହି ପ୍ରେମ୍ୟୀଶ୍ୱରର ଜୀବନୀ ଶକ୍ତିର ପ୍ରାଚୁର୍ଯ୍ୟରେ ଉଦ୍‌ବେଳିତ । ଯେଉଁ ଜୀବନଚର୍ଯ୍ୟାରେ ଅହଂପଣ ଅକ୍ଷୁର୍ଣ୍ଣ ରହେ । ତାହା ସେମାନେ ଅସ୍ୱୀକାର କରି ସରଳ, ଘନିଷ୍ଠ ଓନ୍ତରଙ୍ଗତାର ନିଃସନ୍ଦେହ ମହତ୍ତ୍ୱ ସାବ୍ୟସ୍ତ କରିଛନ୍ତି । ବ୍ୟକ୍ତିର ବ୍ୟକ୍ତି ସହିତ ସନ୍ତୋଷ ଜନକ ସମ୍ପର୍କ ଯେତେବେଶି, ଜୀବନ ସେତେବେଶି ପରିପୂର୍ଣ୍ଣ

ଓ ତାତ୍ପର୍ଯ୍ୟ ପୂର୍ଣ୍ଣ । ସପ୍ତମ ଋତୁ, ପୃଷ୍ଟବନ୍ଧ, ପୃ-୧୧୩ „ଏଠାରେ ଶ୍ରୀଯୁକ୍ତ ରଥ" ଦୁଇଟି ବିପରୀତ ଧର୍ମୀ ଜୀବନ ଚର୍ଯ୍ୟାର ମୂଲ୍ୟାଙ୍କନ କରିଛନ୍ତି । ଗୋଟିକରେ ଆକ୍ରମଣ, ଲୁଣ୍ଠନ ଓ ଅନ୍ୟମାନଙ୍କ ବଶତା ଜରିଆରେ ବ୍ୟକ୍ତି ନିଜକୁ ପ୍ରତିଷ୍ଠିତ କରିବାକୁ ଚାହେଁ ଅନ୍ୟଟିର ଲକ୍ଷ୍ୟ ହେଉଛି ଏକ ଅନାବିଲ, ସ୍ୱାର୍ଥରହିତ ସମ୍ପର୍କ—ଯେଉଁଥିରେ ଜଣେ ଅନ୍ୟଜଣଙ୍କର ଜୀବନରେ ପ୍ରବେଶ କରିପାରେ ଏବଂ ସେପରି ପ୍ରବେଶ କରିବା ଦ୍ୱାରା ବାର୍ଥ ତାର ଅନୁଭୂତିରୁ ଯାହା ପାଏ । ବର୍ଣ୍ଣିବାର ଏହି ଦୁଇଟି ପ୍ରଣାଳୀ ଭିତରେ ତାରତମ୍ୟ ଏବଂ ପ୍ରଥମ ପ୍ରଣାଳୀର ନିଷ୍ଫଳତାକୁ ଦୃଷ୍ଟିରେ ରଖି ପ୍ରେମର ମାହାତ୍ମ୍ୟକୁ ସ୍ମରଣ କରାଯାଇପାରେ ।

'ବ୍ରଜମନୋହର' କାବ୍ୟର ନାୟିକା ରାଧା ଚିର ବିରହିଣୀ । ନାୟକର ପ୍ରୀତିପାଇଁ ସେ ଆତ୍ମତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ । କବି ଜଗନ୍ନାଥ ପାଣି ବିରହର କବି ଏବଂ ପରକୀୟା ପ୍ରେମର ସମର୍ଥକ । କାବ୍ୟରେ ଦୁଇଟି ନବୀନ ପ୍ରାଣର ଉଚ୍ଛ୍ୱସିତ ପ୍ରେମଭାବର ବର୍ଣ୍ଣନାରେ କବି ଶତମୁଖର । ପୂର୍ବରାଗ, ପ୍ରଣୟ, ଉତ୍କଣ୍ଠା, ଭୟ, ଅଭିସାର, ଅପବାଦ, ଆତ୍ମସମର୍ପଣ ପ୍ରଭୃତି ଅବସ୍ଥା ଦେଇ ପ୍ରେମର ପରିପୂର୍ଣ୍ଣତା କବି ଦେଖିଛନ୍ତି । ଶ୍ୟାମ ପ୍ରେମକୁ ମୂଳଧନ କରି ଭୟ ଓ ସଂଦେହର ବାତାବରଣ ଭିତରେ ବି ରାଧା ଶକ୍ତି ସଂଗ୍ରହ କରିଛନ୍ତି । ଏକ ପକ୍ଷରେ ଶାଶୁ, ନଣନ୍ଦ, କୁଳ, କୁଟୁମ୍ବ ଓ ଅପବାଦର ଭୟ ଏବଂ ଅପରପକ୍ଷରେ ମୋହନ ମୁରଲୀସ୍ୱନ, କଦମ୍ବ, କୁଞ୍ଜ, ଯମୁନାର କଳକଳ ଜଳ ଓ ମନଲୋଭା ଶ୍ୟାମରୂପ ତାଙ୍କ ମାନସିକ ଅବସ୍ଥାକୁ ବିଚଳିତ କରିଦେଇଛି । ରାଧାଙ୍କ ପାଇଁ ସନ୍ଦେହ, ଭୟ ଓ ଅପବାଦ ଯେତିକି ପ୍ରତିବନ୍ଧକ ସୃଷ୍ଟି କରିଛି, ଉତ୍କଣ୍ଠା, ଅଭିସାର, ଅଭିମାନ ଓ ଆତ୍ମସମର୍ପଣ ସେତିକି ଅନନ୍ଦାନୁଭୂତି ଆଣି ଦେଇଛି । ମଣିଷର ଏହି ମାନସିକ ସନ୍ତୁଳନକୁ ଓଡ଼ିଆ ଗୀତିକବିମାନେ ସୁନ୍ଦର ଭାବରେ ଉପସ୍ଥାପିତ କରାଇ ପାରିଛନ୍ତି ସେମାନଙ୍କ କାବ୍ୟକୃତି ଗୁଡ଼ିକରେ । ଯାହା ଆଧୁନିକ କବିମାନଙ୍କ କାବ୍ୟ ପ୍ରେରଣାର ପର୍ଯ୍ୟାପ୍ତ ଉପାଦାନ ।

କବି ଜଗନ୍ନାଥ ପାଣିଙ୍କ 'ବ୍ରଜମନୋହର' କାବ୍ୟର ପ୍ରେମତତ୍ତ୍ୱକୁ ନିମ୍ନୋକ୍ତ ବିଶେଷ ବିଭବରେ ବିଭକ୍ତ କରାଯାଇପାରେ—

କ) ପ୍ରେମ ଜୀବନର ମହତ୍ତମତତ୍ତ୍ୱ : (୦ ୦।୭-୮)

ଖ) ପ୍ରେମ ଯୁଗପତ୍ ସରଳ ଓ କଠିନ : (୧୧।୭-୭)

ଗ) ପ୍ରେମରେ ମିଳନ ବିଚ୍ଛେଦର ଅନୁଭବ : (୨୧।୧୯, ୨୧।୭-୧୪)

ଘ) ପ୍ରେମ ବେଦନା ପ୍ରଧାନ : (୧।୧-୧୦)

ଙ) ପ୍ରେମ ମନର ଦୃଢତା ଓ ଏକନିଷ୍ଠତାର କାରଣ : (୧୧।୧୨ ଓ ୧୦।୧୩)

ଚ) ପ୍ରେମରେ ପ୍ରିୟହିତ କାମନା କରାଯାଇଛି । (୧୪।୧୬)

ଛ) ଲୋକୋତ୍ତର ହେବାର ପ୍ରୟାସ ରହିଛି : (୧୦।୧୬ ଓ ୧୯।୯)

କବିଙ୍କ ଉପଦୃଷ୍ଟିକୁ ଅନୁଶୀଳନ କଲେ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେଉଁ ଯେ ଜୀବନର ରସପୂର୍ଣ୍ଣ ଅନୁଭୂତିକୁ କଳା ବିମୂର୍ତ୍ତ କରେ । ତାର ଭିତରେ ସମାଜ ପାଇଁ ପ୍ରତିଷ୍ଠା କରେ ନୂତନପୂର୍ଣ୍ଣ ଜୀବନ, ଯାହା ସୌନ୍ଦର୍ଯ୍ୟ ଓ ସତ୍ୟର । ସୁକୁମାର ପଣରେ କଳା ଜୀବନକୁ ସୂକ୍ଷ୍ମ ଓ ସୁନ୍ଦର କରେ । ଅଙ୍ଗୀକାର ବୋଧରେ ଜୀବନକୁ ମହିମାବନ୍ତ କରେ । ଏଥିପାଇଁ ଆମର ପ୍ରାଚୀନ କବିମାନେ "ବହୁଜନ ହିତାୟ" ଉଦ୍ଦେଶ୍ୟରେ ଗ୍ରନ୍ଥରଚନା କରିଥିବା କଥା ସ୍ୱୀକାର କରିଛନ୍ତି । ଏଣୁ ସୌନ୍ଦର୍ଯ୍ୟାଭିବ୍ୟକ୍ତିର ସୃଷ୍ଟି କଳାର ଧର୍ମ । କଳାକାର ଯହିଁରୁ ଆନନ୍ଦାନୁଭୂତି ଲାଭକରେ ତାହା ସେ ସମାଜକୁ ଆନନ୍ଦ ଦାନ ଉଦ୍ଦେଶ୍ୟରେ କଳାରୂପ ପ୍ରଦାନ କରେ । ଫଳରେ କଳା ମାନସିକ ଶୃଙ୍ଖଳା ଓ ଶାରୀରିକ ଶ୍ରମ ଲାଘବକାରୀ ଶକ୍ତିରୂପେ ପରିଗଣିତ ହୁଏ । ଏହା ହେଉଛି କଳାର ମନମୋହନକାରୀ ଶକ୍ତି । ଏକଳା ଅତୀତାନୁଭୂତିର ସ୍ପନ୍ଦ ପୁନରାବୃତ୍ତି ହୋଇଥିବାରୁ ତଦ୍‌ଦ୍ୱାରା କଳାକାରର ସୌନ୍ଦର୍ଯ୍ୟାନୁଭୂତିରୁ କଳାର ଆନନ୍ଦ ପ୍ରଦାୟିନୀ ଶକ୍ତି ସମ୍ଭବିଥାଏ ବୋଲି କୁହାଯାଇ ପାରେ । କବି ଜଗନ୍ନାଥ ପାଣି ଭକ୍ତ ପରମ୍ପରାର ଏକ ବଳିଷ୍ଠ କଳାକାର ।



ଅର୍ଥ ବିଭାଗ,
ଭୁବନେଶ୍ୱର

# ଜଗନ୍ନାଥ ପାଣିଙ୍କ ରଚନାରେ ମନସ୍ତାତ୍ତ୍ୱିକ ଚେତନା

ଡ଼କ୍ଟର ବିଜୟ କୁମାର ମହାନ୍ତ

ମୂଳ ସଂସ୍କୃତ ମହାଭାରତ ଓ ସାରଳା ଦାସଙ୍କ ମହାଭାରତର ପର୍ବ ସଂଖ୍ୟା ଅଠର ହୋଇଥିବା ସ୍ଥଳେ ଜଗନ୍ନାଥ ପାଣିଙ୍କ ମହାଭାରତର ପର୍ବ ସଂଖ୍ୟା ଏଗାର । କବିଙ୍କ ମଣା ପର୍ବ, ଛନ୍ଦ ପର୍ବ ଓ ତୀର୍ଥ ପର୍ବ ସାରଳା ମହାଭାରତରେ ସ୍ୱତନ୍ତ୍ର ପର୍ବ ଭାବରେ ପରିଦୃଷ୍ଟ ହୁଏ ନାହିଁ । କେବଳ ଆଦ୍ୟ ପର୍ବ (ଆଦି ପର୍ବ), କର୍ଣ୍ଣ ପର୍ବ, ଶଲ୍ୟପର୍ବ ଗଦା ପର୍ବ, କାର୍ତ୍ତିକା ପର୍ବ ଅଶ୍ୱମେଧ ପର୍ବ, ମୂଷଳୀ ପର୍ବ ଏବଂ ସ୍ୱର୍ଗା ରୋହଣ ପର୍ବ ଗୁଡ଼ିକ ସାରଳା ମହାଭାରତରେ ଦେଖିବାକୁ ମିଳିଥାଏ । ପ୍ରଥମ ଏବଂ ଶେଷ ତିନୋଟି ପର୍ବର ସାମ୍ୟ ଏ ଦୁଇ ମହାଭାରତରେ ଅଛି । ସାମଗ୍ରିକ ଭାବେ କଥାବସ୍ତୁକୁ ଗ୍ରହଣ କରି ଜଗନ୍ନାଥ ପାଣି ତାଙ୍କ ମହାଭାରତର କଳେବରକୁ ଯଥା ସମ୍ଭବ ସୀମିତ କରି ପାରିଛନ୍ତି । ସୀମିତ ସମୟରେ ମହାଭାରତକୁ ଲୋକମାନଙ୍କ ଭିତରେ ପ୍ରବେଶ କରାଇବାର ଏକ ଅଭିନବ ପ୍ରଚେଷ୍ଟାରେ କବି ନିଶ୍ଚିତ ଭାବେ ସଫଳ ହୋଇଛନ୍ତି । ପୁଣି ସାରଳା ମହାଭାରତ 'ଦାଣ୍ଡୀ ବୃତ୍ତ' ରେ ରଚିତ ହୋଇଥିବା ବେଳେ ଜଗନ୍ନାଥ ପାଣିଙ୍କ ମହାଭାରତ ଓଡ଼ିଆ ଭାଗବତର ଲୋକପ୍ରିୟ 'ନବାକ୍ଷରୀ' ବୃତ୍ତରେ ରଚିତ ହୋଇଛି । କିନ୍ତୁ କେତେକ ସ୍ଥାନରେ ଅକ୍ଷର ସଂଖ୍ୟା ନଅରୁ ଅଧିକ ମଧ୍ୟ ହୋଇଛି ।

ଜଗନ୍ନାଥ ପାଣିଙ୍କ ମହାଭାରତର ସୀମିତ କଳେବର ମଧ୍ୟରେ କଥାବସ୍ତୁ ସଯୋଜନା, ସମାଜ ଚିତ୍ର ଏବଂ ବର୍ଣ୍ଣନା ବୈଚିତ୍ର୍ୟ ପାଠକକୁ ଯେପରି ମୁଗ୍ଧ କରେ, ଚରିତ୍ର ମାନଙ୍କର ମନସ୍ତାତ୍ତ୍ୱିକ ଚେତନାର ସଫଳ ପ୍ରକାଶନ ପାଠକ ପ୍ରାଣକୁ ସେପରି ରସୋତୀର୍ଣ୍ଣ କରେ । ମନସ୍ତତ୍ତ୍ୱର ଜଟିଳ ଧାରାକୁ କବି ଖୁବ୍ ସରଳ ଏବଂ ସାବଲୀଳ ଭାବରେ ପ୍ରକାଶ କରି ନିଜର ପାଣ୍ଡିତ୍ୟ ଏବଂ କଳାକାରିତ୍ୱର ପରିଚୟ ଦେବାକୁ ସମର୍ଥ ହୋଇଛନ୍ତି ।

ଧୃତରାଷ୍ଟ୍ର ଜ୍ୟେଷ୍ଠ କିନ୍ତୁ ଅନ୍ଧ । ତେଣୁ ପାଣ୍ଡୁ କୁନ୍ତୀଙ୍କୁ ବିବାହ କଲା ପରେ ସିଂହାସନରେ ଅଭିଷିକ୍ତ ହୋଇଛନ୍ତି । ସବୁ ରାଜା ତାଙ୍କ ପଦ ତଳେ । ଶାସନ କ୍ଷମତା ନିଜ ହାତକୁ ନ ଆସି ସାନ ଭାଇ ହାତରେ ରହିବାରୁ ଧୃତରାଷ୍ଟ୍ରଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । ଅନ୍ଧ ହେଲେ ବି ସେ ମଣିଷ । ସାଧାରଣ ମଣିଷର କାମନା,

ବାସନା ତାଙ୍କ ଭିତରେ ସଂଗୁପ୍ତ । ନିଜର ଅବଚେତନ ସ୍ତରରେ ରହିଥିବା ଗୌଣ ମନୋଭାବ ତାଙ୍କୁ ବିକୃତ ଓ ଭାରାକ୍ରାନ୍ତ କରୁଛି । ଈର୍ଷା ଭାବ ସୃଷ୍ଟି କରୁଛି । ଦୁଃଖିତ ମନା ହୋଇ ସେ ନିଜ ଅଦୃଷ୍ଟକୁ ନିନ୍ଦା କରୁଛନ୍ତି । କବିଙ୍କ ଭାଷାରେ—

"ଅନେକ ରାଜା ଧୃତରାଷ୍ଟ୍ର । ଚିନ୍ତଇ ଆପଣା ଅଦୃଷ୍ଟ ॥
ବୋଇଲେ ମୋର କର୍ମ ହୀନ । ରାଜ୍ୟକୁ ନୋହିଲି ଭାଜନ ॥
କନିଷ୍ଠ ଭାଇ ପାଣ୍ଡୁ ମୋର । ସେ ରାଜା ହୋଇଲା ରାଜ୍ୟର ।"

(ଆଦ୍ୟପର୍ବ)

ଧୃତରାଷ୍ଟ୍ରଙ୍କ ମନର ଏ ଦ୍ୱନ୍ଦାତ୍ମକ ଖେଦ ଏବଂ ଈର୍ଷାଗ୍ନି ଯାହା ପ୍ରଥମ ଅବସ୍ଥାରୁ ସୃଷ୍ଟି ହୋଇଥିଲା ତାହା ଶେଷ ପର୍ଯ୍ୟନ୍ତ ତାଙ୍କ ଭିତରେ ସୁଦୃଢ଼ ଆସନ ପାତି ରହିଛି ଯେଉଁଥି ପାଇଁ ସବୁ ଥାଇ ମଧ୍ୟ ସେ ଏକ ବିରାଟ ଶୂନ୍ୟତା ଭିତରେ ରହିଲା ପରି ମନେ କରୁଛନ୍ତି । ପାଣ୍ଡୁ ଏବଂ ପାଣ୍ଡବଙ୍କ ପାଇଁ ଧୃତରାଷ୍ଟ୍ରଙ୍କ ବାହ୍ୟ ମଣିଷଟି ସ୍ନେହ, ମମତା ଏବଂ ଆନ୍ତରିକତା ପ୍ରଦର୍ଶନ କରୁଥିଲା ବେଳେ ଅନ୍ତଃ ମଣିଷଟି ବିକଳ ଓ ଜ୍ୱାଳାମୟ ହୋଇ ଉଠିଛି ବେଳକୁ ବେଳ । ପାଣ୍ଡବ ମାନଙ୍କର ଅମଙ୍ଗଳ ଚିନ୍ତା କରି କରି ଛିନ୍ନମୂଳ ହେବା ପରେ ବି ତାଙ୍କ ମନ ଭିତରେ ପ୍ରଜ୍ୱଳିତ ହୋଇଥିବା ଅଗ୍ନି ପ୍ରକାଶିତ ହୋଇ ନାହିଁ । ହରାଇବାର ସମସ୍ତ ଦୁଃଖ ଭିତରେ ସ୍ଥାଣୁ ପାଲଟି ଯାଇ ନ ଥିବା ଧୃତରାଷ୍ଟ୍ର ଆନ୍ତର ଉଗ୍ର ଭାବେ ପ୍ରତିଶୋଧ ପରାୟଣ ହୋଇଛନ୍ତି । ଯେଉଁ ଭୀମ ତାଙ୍କୁ ପୁତ୍ର ଶୋକରେ ଜର୍ଜରିତ କରିଛି ସେଇ ଭୀମକୁ ହତ୍ୟା କରିବାକୁ ତାଙ୍କ ହୃଦୟ ଭିତରେ ବଳିଚେତନା ଜାଗ୍ରତ ହୋଇଛି । ତେଣୁ ସେ ଛଳନାର ଆଶ୍ରୟ ନେଇଛନ୍ତି । ଭୀମକୁ କୋଳରେ ବସାଇ ପୁତ୍ର ଶୋକକୁ ପାଶୋରିବା ପାଇଁ ତାଙ୍କର ଚାତୁର୍ଯ୍ୟୋକ୍ତି ପ୍ରକାଶ ପାଇଛି । ତାଙ୍କ ମନର ସଂଗୁପ୍ତ ଭାବନାକୁ ଶ୍ରୀକୃଷ୍ଣ ଜାଣି ପାରି ଭୀମଙ୍କ ବଦଳରେ ତାଙ୍କ କୋଳକୁ ଦେଇଛନ୍ତି ଲୌହ ଭୀମ । ଧୃତରାଷ୍ଟ୍ର ସେ ଲୌହ ଭୀମକୁ ଚୂର୍ଣ୍ଣ କରିଛନ୍ତି ପ୍ରକୃତ ଭୀମ ବୋଲି ଭାବି ।

"ଲୁହାର ଭୀମ ନାଶି ଅନ୍ଧ । ହା ପୁତ୍ର ବୋଲି କଲା କ୍ରୋଧ ॥
କାନ୍ଦିଲେ ପୁତ୍ରଙ୍କ ନାମ ଧରି । ତୁମ୍ଭର କଷ୍ଟ ମୁଁ ପାଶୋରି ॥"

(ଛିଦ୍ର ପର୍ବ)

ପୁତ୍ର ହନ୍ତାକୁ ନାଶ କରି ଧୃତରାଷ୍ଟ୍ର ଯେତେବେଳେ ପରମ ତୃପ୍ତି ଲାଭ କରିଛନ୍ତି ଏବଂ ଶୋକାକୁଳ ଭାବେ ପୁତ୍ରମାନଙ୍କ ନାମ ଧରି କାନ୍ଦି ଉଠିଛନ୍ତି ଗାନ୍ଧାରୀ ତାଙ୍କୁ ସାନ୍ତ୍ୱନା ଦେଇଛନ୍ତି । ଅନ୍ଧ ଧୃତରାଷ୍ଟ୍ରଙ୍କୁ ଏ ପର୍ଯ୍ୟନ୍ତ ପିତୃ ତୁଲ୍ୟ ମନେ କରି ସମ୍ମାନ ଭକ୍ତି ଜଣାଉଥିବା ମହା ପରାକ୍ରମୀ ଭୀମ ସାଙ୍ଗେ ସାଙ୍ଗେ ଧୃତରାଷ୍ଟ୍ରଙ୍କ ପ୍ରକୃତ ବୀଭତ୍ସ ସ୍ୱରୂପ ଜାଣି ପାରି କ୍ରୋଧାନ୍ୱିତ ହୋଇ ପଡ଼ିଛି । ତା' ହୃଦୟରୁ ଭକ୍ତି, ସ୍ନେହ, ମମତା

ଅନ୍ତରଙ୍ଗତା ଏବଂ ସମବେଦନା ଦୂର ହୋଇ ଯାଇଛି । ପୁତ୍ର ଭୀମର ଶବ ଉପରେ ଅନ୍ୟ ଏକ ଭୀମ ଅଙ୍ଗ ପ୍ରକାଶ କରୁଛି । ଯାହା ମୁହଁରେ ତା' ମନର କଥା ପ୍ରକାଶ ପାଇଛି—

''ଭୀମ ଉଠିଲା କୋପ କରି । ଅନ୍ଧକୁ ପକାଇବ ମାରି ॥
ତୋ' ବୋଲେ ପାରୁନ ମାରତେ । ଯାହାକୁ ସାହା ଜଗନ୍ନାଥେ । ''

(ଛତ୍ର ପର୍ବ)

ଜୀବନ୍ତ ଭୀମର କଣ୍ଠ ସ୍ୱର ଏବଂ କ୍ରୋଧ ବାଣୀ ଶୁଣି ଅନ୍ଧ ଧୃତରାଷ୍ଟ୍ର ଧରଣୀ ଉପରେ ଲେଟି ଅପଣା ଅଘାତରେ ନିଜେ ବିଦୀର୍ଣ୍ଣ ହୋଇଛନ୍ତି । ବିଳାପ କରିଛନ୍ତି । କବିଂକ ବର୍ଣ୍ଣନାରେ ଏ ପ୍ରକାର ଜୀବନ ଅଲେଖ୍ୟ ପାଠକ ପ୍ରାଣରେ ଶିହରି ଆଲୋଡ଼ନ ସୃଷ୍ଟି କରିବାକୁ ସମର୍ଥ ।

ମହାଭାରତର ଅନ୍ୟ ଏକ ମୁଖ୍ୟ ଚରିତ୍ରକୁ ଦୁର୍ଯ୍ୟୋଧନ ମଧ୍ୟ ଜଗନ୍ନାଥ ପାଣିଂକ ଲେଖନୀରେ ଖୁବ୍ ଜୀବଂତ ହୋଇ ପାରିଛି । ତା' ଚରିତ୍ରର ପ୍ରତିଟି ଦିଗକୁ ଉନ୍ମୋଚିତ କରିବାରେ କବି ଯେତିକି ସଫଳ ହୋଇଛନ୍ତି ତା' ଅନ୍ତଃ ସ୍ୱରୂପକୁ ଉଦ୍‌ଘାଟନ କରି ତାକୁ ଆହୁରି ବାସ୍ତବ କରିବାକୁ ସମର୍ଥ ହୋଇ ପାରିଛନ୍ତି । ଦୁର୍ଯ୍ୟୋଧନ ଯୋଦ୍ଧା, ପରାକ୍ରମୀ । ପୁଣି ମାନ । ଗର୍ବ, ଅହଙ୍କାର ଏବଂ ଦାମ୍ଭିକତା ତା'ର ଚାରିତ୍ରିକ ବିଶେଷତ୍ୱ । ବାଲ୍ୟାବସ୍ଥାରୁ ଏ ସବୁର ଲକ୍ଷଣ ତା' ଠାରେ ପରିଲକ୍ଷିତ ହୋଇଥିଲା । ସଭା ମଧ୍ୟରେ ଦୁର୍ଯ୍ୟୋଧନ ଭୀମକୁ 'ପବନ ସୁତ' ବୋଲି ସମ୍ବୋଧନ କରି ଅପମାନ ଦେବାରେ ଖୁବ୍ ଉଲ୍ଲସିତ ହୁଏ । ଶ୍ରୀକୃଷ୍ଣଙ୍କ ପ୍ରରୋଚନାରେ କିନ୍ତୁ ଭୀମ ଯେଉଁ ଦିନ ତାକୁ 'ଗୋଲକନନ୍ଦନ' ବୋଲି ପ୍ରତି ସମ୍ବୋଧନ କରିଛି ଏବଂ ସେ କଥା ଶୁଣି ଲୋକେ, ବିଦୁର ପ୍ରଭୃତି ହସିଛନ୍ତି—

ସେ ଦିନ ଚରମ ଅପମାନରେ ସେ ଜର୍ଜ୍ଜରିତ ହୋଇଛି । 'ଗୋଲକ ନନ୍ଦନ' ର ସତ୍ୟା ସତ୍ୟ ସମ୍ପର୍କରେ ମାତା ଗାନ୍ଧାରୀଙ୍କ ଠାରୁ ସବୁ ଶୁଣିବା ପରେ ମନ ମଧ୍ୟରେ ତାର ଅଗ୍ନି ସଂଚରି ଯାଇଛି । ଯେଉଁ ମାତୁଳ କୁଳ ଯୋଗୁ ସେ ଆଜି ବାଲ୍ୟ ଶତ୍ରୁ ଭୀମ ଦ୍ୱାରା ସଭା ମଧ୍ୟରେ ଉପହସିତ ହୋଇଛି-ସେ କୁଳକୁ ଧ୍ୱଂସ କରିବାକୁ ତା ଭିତରେ ଥିବା ଦୁର୍ଦ୍ଧର୍ଷ ମଣିଷଟି ମମତା ଶୂନ୍ୟ ହୋଇ ରାକ୍ଷସ ପାଲଟି ଯାଇଛି । ପାଣି କବିଙ୍କ ଭାଷାରେ—

''ବୋଲଇ ଗାନ୍ଧାର ରାଜନ । ମୋତେ ସେ କଲା ହୀନମାନ
ବିଧବା କନ୍ୟାକୁ ଆଣିଲା । ମୋର ପିତାକୁ ବିଭା ଦେଲା ॥''

(ଆଦ୍ୟପର୍ବ)

ବଳି ଶପଥ ନେଇ ସେ ସୈନ୍ୟସାମନ୍ତ ଧରି ମାତୁଳକୁଳ ଗାନ୍ଧାର ବଂଶ ଉପରେ ଆକ୍ରମଣ କରିଛି ଏବଂ ସମସ୍ତଙ୍କୁ ବନ୍ଦୀକରି ରୁଦ୍ଧ କାରାଗାର ମଧ୍ୟରେ ଅନାହାରରେ

ନର୍ଯାତିତ କରି ନିଃଶେଷ କରିଛି । କୌଶଳେ କରି ବଞ୍ଚି ରହିଛି କେବଳ ଶକୁନି । ପିତୃକୁଳ ହନ୍ତାର ପ୍ରତିଶୋଧ ନେବାପାଇଁ ତା' ପ୍ରାଣରେ କଠୋର ପ୍ରତିଜ୍ଞା । ଛଳନାରେ ଦୁର୍ଯୋଧନର ସେ ହୋଇଛନ୍ତି ମୁଖ୍ୟ ପରାମର୍ଶଦାତା । ସୁବର୍ଣ୍ଣ ସୁଯୋଗ ଆସିଛି । ଦୁର୍ଯୋଧନ ଏବଂ ଯୁଧିଷ୍ଠିରଙ୍କ ମଧ୍ୟରେ ପଶାଖେଳର ଆୟୋଜନ କରିଛି ଶକୁନି ମଧ୍ୟସ୍ଥ ମାନି । ପଶାଖେଳରେ ଯୁଧିଷ୍ଠିରଙ୍କ ହାରିଗଲେ ପାଣ୍ଡବମାନଙ୍କ ଦ୍ୱାରା ହିଁ କୁରୁବଂଶ ବିନାଶ ସମ୍ଭବ ହେବ ବୋଲି ସେ ଜାଣିଛି । ତେଣୁ ନିଜ ହୃଦୟରେ ପ୍ରଜ୍ୱଳିତ ପ୍ରତିହିଂସାର ବହ୍ନିକୁ ନିର୍ବାପିତ କରିବାକୁ ପଶାଖେଳ ପୂର୍ବରୁ ଗଙ୍ଗାମାତାଙ୍କୁ ଚିନ୍ତା କରିଛି—

"ବୈମାତ୍ର ପିତାଙ୍କୁ ପ୍ରସନ୍ନ । ବଂଶ ମାରିଲା ଦୁର୍ଯୋଧନ ॥
ହରାଅ ଯୁଧିଷ୍ଠି ଦେବଙ୍କୁ । ମାରନ୍ତି ମୋ ପିତା ଶତ୍ରୁକୁ ॥"

(ପଶାପର୍ବ)

ନିଜ ଛଳନାର ନିଷ୍ପତ୍ତିରେ ସଫଳ ହୋଇଛି ଶକୁନି । ନିଜ ଆଖିରେ କୁରୁବଂଶର ବିନାଶ ଦେଖି ସନ୍ତପ୍ତ ପ୍ରାଣ ତା'ର ଶୀତଳ ହୋଇଛି । କୁରୁକ୍ଷେତ୍ର ସମରରେ ପାଣ୍ଡବ ପକ୍ଷ ମଲ୍ଲୀ ସହଦେବ ସହିତ ଯୁଦ୍ଧରେ ପ୍ରବୃତ୍ତ ଦୁଇମଲ୍ଲୀଙ୍କ ମଧ୍ୟରେ ସମର । ସେଇଠି ସହଦେବଙ୍କ ଆଗରେ ଶକୁନି ନିଜ ମନର ସଂଗୁପ୍ତ ସତ୍ୟକୁ ଉଦ୍‌ଘୋଷଣ କରିଛି—

"ମୋହର ସବଂଶ ସହିତ । ସେଥିୁ ମାରିଲା କୁରୁନାଥ ।
ତେଣୁ କପଟ ବୁଦ୍ଧି କରି । ଏହାର ବଂଶ ମୁହିଁ ମାରି ॥
ଅନେକ ହତ୍ୟା ମୁହିଁ କଲି । ସୋଦର ଭଣଜା ମାରିଲି ।
ଆଉ ମୁଁ କାହିଁପାଇଁ ଥିବି । ଭାରତ ଯୁଦ୍ଧେ ମୁଁ ମରିବି ।"

(ଶଲ୍ୟପର୍ବ)

ମଣିଷ ଜୀବନସାରା ଯେଉଁ ସଙ୍ଗୁପ୍ତ ସତ୍ୟକୁ ଅନ୍ୟ ପାଖରେ ପ୍ରକାଶ କରିବାକୁ ସମର୍ଥ ହୋଇନଥାଏ କିମ୍ବା କୁଣ୍ଠିତ ହୋଇଥାଏ; ମୃତ୍ୟୁ ପୂର୍ବରୁ କେଜାଣି କାହିଁକି ସେ ଆପେ ଆପେ ତାହା ପ୍ରକାଶ କରି ଦିଏ । ତା' ନ କଲେ ଯେପରି ସେ ମରିପାରେ ନାହିଁ । ମୃତ୍ୟୁପର ଚରଣାନ୍ତକୁ ନିଜର କରିପାରେ ନାହିଁ । ସାଧାରଣ ମଣିଷଟିଏ ପରି ମୃତ୍ୟୁକୁ ସ୍ୱାଗତ କରିବା ପୂର୍ବରୁ ତା' ମନତଳର ସବୁକିଛି ଅକୁହା କଥାକୁ ସହଦେବଙ୍କ ଆଗରେ ଅକୁଣ୍ଠିତ ଭାବେ ପ୍ରକାଶକରି ଶାନ୍ତି ଅନୁଭବ କରିଛି । ଓଜନିଆ ଛାତିକୁ ହାଲୁକା କରିଛି । ପରିତୃପ୍ତିର ଆନନ୍ଦରେ ମୃତ୍ୟୁପାଇଁ ଆବାହନୀ ସଙ୍ଗୀତ ଗାଇଛି ।

ବାଲ୍ୟକାଳରୁ ପାଣ୍ଡବମାନଙ୍କର ଅମଙ୍ଗଳ କାମନା କରୁଥିବା ଦୁର୍ଯୋଧନ ପାଣ୍ଡବମାନଙ୍କ ଦ୍ୱାରା ବହୁ ସମୟରେ ରକ୍ଷା ପାଇଥିଲେ ବି ଅହେତୁକ ଅହଙ୍କାର ଏବଂ

ଅଶ୍ୱଶ୍ତାମାନଙ୍କୁ ଯେ ଛାଡ଼ିପାରି ନାହିଁ । ଯାହାକ ହୋଇଛି ତା' ମୃତ୍ୟୁର କାରଣ ଏବଂ କୁରୁକୁଳ ଧ୍ୱଂସର କାରଣ । ବିଦ୍ୟାଧ୍ୟୟନ ସମୟରୁ ଆରମ୍ଭ ହୋଇ ସ୍ୱୟମ୍ବର ସଭାରେ ଅପମାନିତ ହେବା ଏବଂ ଦ୍ରୌପଦୀ ଅପ୍ରାପ୍ତି-ଜନିତ ଶୂନ୍ୟତା ବୋଧ ଭିତରେ ଯେ କ୍ରନ୍ଦନରତ ପ୍ରକୃତି ସମସ୍ତରେ, ଜିଣିବି ଖେଳରୁ ସୃଷ୍ଟି ହୋଇଥିବା ମହାଭାରତ ଯୁଦ୍ଧରେ ପ୍ରଥମେ ୯୭ ଭାଇଙ୍କୁ ହରାଇଲା ପରେ ଯେ ଅଧୀର ହୋଇଛି । ବିଦୂର ପ୍ରସ୍ତାବ ଦେଇଛନ୍ତି ଦୁର୍ଯ୍ୟୋଧନଙ୍କୁ ସନ୍ଧି ସ୍ଥାପନ କରି ଶାନ୍ତି ଫେରାଇ ଆଣିବାକୁ । ଧ୍ୱଂସମୁଖରୁ ବର୍ତ୍ତିଯିବାକୁ । କିନ୍ତୁ ସେ ମାନଗୋବିନ୍ଦ । ସେ ଦୁର୍ଦ୍ଧର୍ଷ । ମହାପରାକ୍ରମୀ । ଧ୍ୱଂସ ହେଲେବି ଶେଷ ମୁହୂର୍ତ୍ତରେ ଦୁର୍ବଳମନାହୋଇ, କାପୁରୁଷ ପରି ସନ୍ଧି ସ୍ଥାପନ ପାଇଁ ସେ ଅନିଚ୍ଛୁକ । ତା'ଭିତରେ ଥିବା ଗର୍ବୀ ଏବଂ ଦାମ୍ଭିକ ମଣିଷଟି ସନ୍ଧି ପ୍ରସ୍ତାବ ଶୁଣି ହୁଙ୍କାର ଛାଡ଼ିଛି । ଭୀରୁ କାପୁରୁଷ ପରି ବଞ୍ଚିବାକୁ ଲଜ୍ଜାବୋଧ କରିଛି । ତା' ମନର ସତ୍ତାସ୍ୱରୂପାକୁ କବି ଚମତ୍କାର ଭାବେ କହିଛନ୍ତି—

"ଜୀବନ ଯିବାବେଳେ ସତ୍ୟ । ଛାଡ଼ିବା ନୁହଁଇ ଉଚିତ ।
ମାନ ଅଗ୍ନି ଦହୁଛି ଦେହ । ତୁମ୍ଭମାନ କିଛି ନକହ ॥
ଜୀବନ ଥିବା ଯାଏ ମୁହିଁ । କେବେ ହେଁ ସନ୍ଧି ନକରଇ ॥"

(କର୍ଣ୍ଣପର୍ବ)

ମାନ-ଅଗ୍ନିରେ ସଦା ଦଗ୍ଧ ଦୁର୍ଯ୍ୟୋଧନ ସଚେତନ ଏବଂ ଅବଚେତନ ମନରେ କୌଣସି ସମୟରେ ସନ୍ଧି ପାଇଁ କିମ୍ବା ପାଳିମ୍ ପାଇଁ ଆଗେଇ ଯାଇନି କିମ୍ବା ସ୍ୱପ୍ନ ଦେଖିନି ସତ, ହେଲେ କୁରୁକ୍ଷେତ୍ର ଯୁଦ୍ଧର ଭୟାବହତା ଏବଂ ଭୀମର ଅଲୌକିକ ଶକ୍ତି ଦେଖି ତା' ପ୍ରାଣରେ କମ୍ପନ ସୃଷ୍ଟି ହୋଇଛି ତା' ଅଜଣାରେ । ସେ ପ୍ରତ୍ୟକ୍ଷ ଭାବରେ ବି ଦୁର୍ବଳ ହୋଇ ପଡ଼ିଛି ବେଳକୁ ବେଳ । ଗୋଟି ଗୋଟି ହୋଇ ନିଜର ସମସ୍ତ ଶକ୍ତିପକ୍ଷ ହରାଇଲା ପରେ ଯେଉଁଦିନ ଦୁଃଶାସନ ଭୀମକୁ ହତ୍ୟା କରିବା ପାଇଁ ଦୁର୍ବାର ଶପଥ ପ୍ରକାଶ କରିଛି—ସେତେବେଳେ କାହିଁକି କେଜାଣି ଆଉ ଅଧିକ ହରାଇବା ଦୁଃଖକୁ ସହ୍ୟ କରିବାରୁ ମନେ ମନେ ଅସମର୍ଥ ହୋଇ ଉଠିଛି ଦୁର୍ଯ୍ୟୋଧନ । ଦୁଃଶାସନ ରକ୍ତରେ ଦ୍ରୌପଦୀର ମୁକୁଳାକେଶ ପ୍ରକ୍ଷାଳନ ପାଇଁ ଭୀମର ପ୍ରତିଜ୍ଞା ଦୁର୍ଯ୍ୟୋଧନଙ୍କୁ ବିବ୍ରତ କରିଛି । ସତେ ଯେପରି ଦୁଃଶାର ମୃତ୍ୟୁ ତା' ଆଖି ଆଗରେ ଉଦ୍ଭାସିତ ହୋଇ ଉଠିଛି । ତେଣୁ ଦୁଃଶାକୁ ନ ହରାଇବାର ଆବେଗ ଜଡ଼ିତ ଆକୁଳତା ଭିତରେ ଦୁର୍ଯ୍ୟୋଧନର ବିକଳ ସ୍ୱର ପ୍ରକାଶ ପାଇଛି—

"ରାଜା ବୋଇଲା ଆରେ ବାବୁ । ଭୀମା ଛାମୁକୁ ତୁ ନ ଯିବୁ ॥
ଦ୍ରୌପଦୀ କେଶ ତୋର ପାଇଁ । ଅବନ୍ଧା ରଖିଅଛି ସେହି ॥"

(କର୍ଣ୍ଣପର୍ବ)

ବଡ଼ ଭାଇର ଏ କେଇ ପଦ କଥା ଭିତରେ ଦୁଃଶା ପ୍ରତି ତା'ର ଆକର୍ଷଣ ଏବଂ ମମତା ଯେତିକି ମାର୍ମିକ ହୋଇଛି—ତା ଭିତରେ ମୁଣ୍ଡ ଟେକିଥିବା ଦୁର୍ବଳ ମଣିଷଟିର ବିକଳ ଦଗ୍‌ଧ ରୂପ ସେତିକି ବାସ୍ତବାନୁରଞ୍ଜିତ ହୋଇଛି । ସେ ଦୁର୍ବଳ ମଣିଷଟି ବେଳକୁ ବେଳ ଅଧିକ ଦୁର୍ବଳ ହୋଇ ପଡ଼ୁଛି ଜଣକ ପରେ ଜଣକୁ ହରାଇବାର ଦେଖି । ଯେଉଁ କର୍ଣ୍ଣ ଉପରେ ଦୁର୍ଯ୍ୟୋଧନର ଅପରିମିତ ଆଶା ଭରସା ଥିଲା, ଯାହାର ସାନ୍ନିଧ୍ୟ ପାଇ ସେ ସବୁକିଛି ଦୁଃଖ ଭୁଲି ପାରୁଥିଲା—ସେହି କର୍ଣ୍ଣର ମୃତ୍ୟୁ ପରେ ଦୁର୍ଯ୍ୟୋଧନ ଖୁବ୍ ଭାଙ୍ଗି ପଡ଼ୁଛି । ଚତୁର୍ଦ୍ଦିଗ ତାକୁ ଅନ୍ଧକାର ମନେ ହୋଇଛି । ହତଭମ୍ବ ହୋଇ ସେ ନିଜକୁ ନିଜେ ଧରି ରଖିବାକୁ ବି ସମର୍ଥ ହୋଇ ପାରିନାହିଁ । ମାମୁଁ ଶକୁନି ପାଇଁ ତା' ମନର କରୁଣ ବିଳାପ ଗୁମୁରି ଉଠିଛି—

"ହେ ମାମୁଁ କରିବି ମୁଁ କିସ । ସମସ୍ତେ ଗଲେ ମୋର ନାଶ ।"

(କର୍ଣ୍ଣପର୍ବ)

କିନ୍ତୁ ଶକୁନିର ଉପଦେଶ କିମ୍ବା ପରାମର୍ଶ ଦୁର୍ଯ୍ୟୋଧନ ପାଇଁ କୌଣସି ଶୁଭଙ୍କର ହେବା ପୂର୍ବରୁ ଶକୁନିର ମୃତ୍ୟୁ ଘଟିଛି । ଶକୁନିର ମୃତ୍ୟୁ ଦେଖି ତାର କ୍ରୋଧ ଏବଂ ଖେଦ ଅନେକ ଗୁଣରେ ବଢ଼ିଯାଇଛି । ମାମୁଁ ପାଇଁ ତା' ପ୍ରାଣର ଗଭୀର ଖେଦୋକ୍ତିକୁ କବି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି—

"ରାଜ୍ୟ କରାଇ ମାମୁଁ ଭୋଗ । ଏବେ ହୋଇଲୁ ମୃତ୍ୟୁ ଯୋଗ ।"

(କର୍ଣ୍ଣପର୍ବ)

ଅନେକ କିଛି କାମନା, ବାସନା ଏବଂ ସ୍ୱପ୍ନ ଗୋଟି ଗୋଟି ହୋଇ ଦୂରେଇ ଯାଇଛି ଦୁର୍ଯ୍ୟୋଧନର । କୃତକର୍ମର ଅନୁଶୋଚନାରେ ସେ ଦଗ୍‌ଧିଭୂତ ହୋଇଛି । ମାମୁଁ ଶକୁନିର ପ୍ରରୋଚନା ଏବଂ ପ୍ରବଞ୍ଚନାରେ ଯେ ସେ ଅଜ୍ଞ ନିର୍ବଂଶ ହୋଇଛି ଯେ ଧାରଣା ଦୃଢ଼ୀଭୂତ ହୋଇଛି ତା' ମନ ଭିତରେ । କୁରୁକ୍ଷେତ୍ର ସମର ପ୍ରାଙ୍ଗଣରୁ ଏକମାତ୍ର ଜୀବିତ ପୁତ୍ର ଲକ୍ଷ୍ମଣ କୁମାରକୁ ଜୀବନ ବଞ୍ଚାଇ ନେଇଯିବାକୁ ପିତୃହୃଦୟର ବାତ୍ସଲ୍ୟ ମମତା ମଧ୍ୟା ଆକୁଳତା ଖୁବ୍ ହୃଦୟସ୍ପର୍ଶୀ ହୋଇପାରିଛି । ତା'ସହିତ ଶକୁନି ପ୍ରତି ସୃଷ୍ଟି ହୋଇଥିବା ଘୃଣା, ଦ୍ୱେଷ ସବୁ କିଛି ଆଖିର ଲୁହରେ ପ୍ରକାଶ ପାଇଛି—

"ଶକୁନି ବୋଲେ ଗଲି ଶିର । ଗଲି ସେ ପିତା ଶତ୍ରୁ ମାର ।"

(ଗଦାପର୍ବ)

କେବଳ ସେତିକି ନୁହେଁ, ଦୁର୍ଯ୍ୟୋଧନ ଯେତେବେଳେ ରକ୍ତନଦୀ ସନ୍ତରଣ କରିଛି ସେ ସମୟରେ ତା'ର ମାନସିକ ଚିତ୍ର ଖୁବ୍ ଭାବଗମ୍ଭୀର ହୋଇଛି । ପ୍ରିୟ ଭାଇ ଦୁଃଶାସନ, ଗୁରୁ ଦ୍ରୋଣାଚାର୍ଯ୍ୟ, ଆଦରର ପୁତ୍ର ଲକ୍ଷ୍ମଣ କୁମାର ପ୍ରଭୃତିଙ୍କ ଶବ ଦେଖି

ଦୁର୍ଯୋଧନର ବିଳାପ, ତା' ପ୍ରାଣର କରୁଣ ପରିଭାଷାକୁ କବି ଜଗନ୍ନାଥ ପାଣି ଅତି ଚମତ୍କାର ଭାବେ ବର୍ଣ୍ଣନା କରିଛନ୍ତି । ମୃତ୍ୟୁ ସୁନିଶ୍ଚିତ ଜାଣି ମଧ୍ୟ ଆତ୍ମଗୋପନ କରିବାକୁ ଭୀଷ୍ମଙ୍କ ପାଖରେ ତାର କରୁଣ ଆତ୍ମ ନିବେଦନ ପ୍ରକାଶ ପାଇଛି—

"ଖୋପିତା ଯେ ବୋଲି ନକଲି । କିଣ ମୁଁ ମନ୍ତ୍ରୀ ବୁଡ଼ାଇଲି ।
କାହିଁ ଲୁଚିବି ଏବେ କହ । ବିଗ୍ରହ ମୋତେ ଆଜ୍ଞାଦିଅ ॥"

(ଗଦାପର୍ବ)

ମୃତ୍ୟୁ ପୂର୍ବରୁ ଶକୁନିର ସତ୍ୟ ସ୍ୱୀକାରୋକ୍ତି ଭଳି ଦୁର୍ଯୋଧନ ମଧ୍ୟ ନିଜକୁ ଖୁବ୍ ସ୍ପଷ୍ଟଭାବେ ପ୍ରକାଶ କରିଦେଇଛି । ଯାହା ଭିତରେ ତା' କୃତକର୍ମ ଏବଂ ତତ୍‌ସମ୍ପର୍କିତ ଅନୁଶୋଚନା ବୈକଲ୍ୟ ଏବଂ ଦଗ୍ଧ ମୂର୍ଚ୍ଛନା ପ୍ରଭୃତି ପାଠକ ପ୍ରାଣକୁ ଗଭୀର ଭାବେ ସ୍ପର୍ଶ କରିଥାଏ । ଠିକ୍ ସେହିପରି ଦୁଃଶାସନ ସହିତ ଯୁଦ୍ଧ କରିବା ସମୟରେ ପ୍ରଥମ ଥର ଭୀମ ହାରି ଯାଇଛି । ପ୍ରକୃତ କଥା ଜାଣି ନପାରି ତାକୁ ମୃତ ମନେ କରି ଯୁଧିଷ୍ଠିର ଯେଉଁ କରୁଣ ବିଳାପ କରିଛନ୍ତି; ତାହା କବି ଲେଖନୀରେ ଖୁବ ବାସ୍ତବ ମନେ ହୋଇଛି ।

ଭୀମ ଚରିତ୍ରର ମନସ୍ତାତ୍ତ୍ୱିକ ସ୍ଥିତିକୁ କବି ଜଗନ୍ନାଥ ପାଣି ଖୁବ୍ ସୁନ୍ଦର ଭାବେ ଉପସ୍ଥାପିତ କରିଛନ୍ତି । ଦୃଷ୍ଟା, ଗୁଣା ହେଲେବି ମାନସିକ ସ୍ତରରେ ତାର ଯେଉଁ ଆଲୋଡ଼ନ, ଅବଚେତନ ମନର ଯେଉଁ ପରିଭାଷା-ତାହା ତା' ଚରିତ୍ରକୁ ଅଧିକ ସଜୀବ କରିଛି । କୁରୁସଭାରେ ଦ୍ରୌପଦୀଙ୍କୁ ବିବସନା କରିବା ସମୟରେ ପଞ୍ଚସ୍ୱାମୀଙ୍କୁ ତାର ଆକୁଳ ପ୍ରାର୍ଥନା-ସତୀତ୍ୱ ରକ୍ଷା କରିବାପାଇଁ । ସମସ୍ତେ କିନ୍ତୁ ନୀରବ । କାରଣ ସେମାନେ ଦୁର୍ଯୋଧନର ଦାସ । କିନ୍ତୁ ଭୀମ ସହ୍ୟ କରି ନପାରି କ୍ରୋଧାନ୍ୱିତ ହୋଇଛି । ଯୁଧିଷ୍ଠିର ତାକୁ ବାରଣ କରିଛନ୍ତି, ବଡ଼ ଭାଇଙ୍କ ଆଦେଶ ମାନିଲେ ମଧ୍ୟ ମନ ମଧ୍ୟରେ ତା'ର କଠୋର ସଂକଳ୍ପ । ଭୀମର ବାହ୍ୟ ଶରୀର ଉପରେ ସିନା ଯୁଧିଷ୍ଠିରଙ୍କ ଆଦେଶ କାର୍ଯ୍ୟ କରିପାରେ; କିନ୍ତୁ ତା' ଅନ୍ତଃ ମଣିଷଟି ସମ୍ପୂର୍ଣ୍ଣ ମୁକ୍ତ ଏବଂ ସ୍ୱାଧୀନ । ତେଣୁ ସ୍ତ୍ରୀ ଅପମାନର ପ୍ରତିଶୋଧ ପାଇଁ ଭୀମ ଭିତରେ ଲୁଚି ରହିଥିବା ପରାକ୍ରମୀ ସ୍ୱାମୀଟି ବଜ୍ରଶପଥ ନେଇଛି—"ହୃଦେ କାଟିଲି ଭୀମ ଗାର । ଭୁଜ ଉପାଡ଼ିବି ଦୁଶାର ।" (ସଭାପର୍ବ)

ସେ ପ୍ରତିଜ୍ଞା ତା'ର ପୂର୍ଣ୍ଣ ହୋଇଛି । ଦୁଃଶା ସହିତ ଭୀମ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲା ବେଳେ ଅତୀତର ସମସ୍ତ କୁକର୍ମ କଥା ଦୁଃଶାକୁ ଭୀମ ସ୍ମରଣ କରାଇ ଦେଇଛି । ବିଷଲଡ୍ଡୁ, ଜତୁଘର, ଦ୍ରୌପଦୀଙ୍କୁ ବିବସନା କରାଇବା ଏବଂ ଅଭିମନ୍ୟୁ ମୃତ୍ୟୁ ପ୍ରଭୃତି ଗୋଟି ଗୋଟି ଘଟଣା ମନେ ପକାଇଦେବା ସଙ୍ଗେ ସଙ୍ଗେ ପ୍ରତିଶୋଧ ପାଇଁ ନିଜର ପ୍ରତିଜ୍ଞା କଥା ମଧ୍ୟ ବଜ୍ର ଗମ୍ଭୀର ସ୍ୱରରେ ପ୍ରକାଶ କରିଛି ଭୀମ—

"ଦ୍ରୌପଦୀ କେଶ ଯେ ବନ୍ଧନ । ଆଜ କରିବ ଦୁଃଶାସନ ।" (କର୍ଣ୍ଣପର୍ବ)

ପରିଶେଷରେ ଅନେକ ଦିନରୁ ପ୍ରଜ୍ୱଳିତ ପ୍ରତିଶୋଧର ବହ୍ନିକୁ ଭୀମ ନିର୍ବାପିତ କରିଛି ଦୁଃଶାସନ ବଧକରି । ଦୁଃଶା ରକ୍ତରେ ଡନୁକ୍ତ କେଶ ପ୍ରକ୍ଷାଳନ କରି ପରମ ତୃପ୍ତିରେ ବେଣୀ ବନ୍ଧନ କରିଛନ୍ତି ଦ୍ରୌପଦୀ ।

ଭୀମ ପାଞ୍ଚାଳୀଙ୍କ ଶପଥ ପୂର୍ଣ୍ଣ କରିବାରେ ସାହାଯ୍ୟ କରିଥିବାରୁ ଦ୍ରୌପଦୀ ଭୀମଙ୍କୁ ଡକାଇ ନିର୍ଜନ ପୁରିରେ ତା' ସହିତ ରତିକ୍ରୀଡ଼ା କରି ପରମ ସୁଖ ଲାଭ କରିଛନ୍ତି । ସ୍ତ୍ରୀର ସୁରକ୍ଷା ପୁରୁଷର ଧର୍ମ । ଯେଉଁ ପୁରୁଷ ନିଜ ସ୍ତ୍ରୀର ଲାଞ୍ଛନା ଏବଂ ଅପମାନର ପ୍ରତିଶୋଧ ନେଇ ପାରେ ସେ ହିଁ ପ୍ରିୟ ଭାଜନ ହୁଏ ସ୍ତ୍ରୀର । ତାର ପୁରୁଷତ୍ୱ ପାଖରେ ସ୍ତ୍ରୀ ନିଜକୁ ତିଳ ତିଳ କରି ସମର୍ପି ଦେବାରେ ଆନନ୍ଦ ପାଏ । ଏହି ସାଧାରଣ ସତ୍ୟର ପରୀକ୍ଷା ଲୋକ କବିଙ୍କ ଲେଖନୀରେ ବେଶ ଉତ୍ତୀର୍ଣ୍ଣ ହୋଇ ପାରିଛି ।

ଶଲ୍ୟ ସହିତ ଯୁଦ୍ଧରେ ଅବତୀର୍ଣ୍ଣ ହେବା ପୂର୍ବରୁ ଦୁଃଶାକୁ ମାରିବାକୁ ଭୀମ ପ୍ରତିଜ୍ଞା କରିଛି । ଦ୍ରୌପଦୀ ମଧ୍ୟ ଅତୀତର ସମସ୍ତ ଲାଞ୍ଛନାକୁ ମନେ ପକାଇ ଯେପରି କ୍ରୋଧାନ୍ୱିତ ହୋଇଛନ୍ତି-ସେହିପରି ନିଜ ଭାଗ୍ୟକୁ ମଧ୍ୟ ନିନ୍ଦା କରିଛନ୍ତି—

"କ୍ଷତ୍ରିୟ କୁଳରେ ହୋଇ ଜନ୍ମ । ହୋଇଲା ମୋର ହୀନ କର୍ମ ।" (କର୍ଣ୍ଣ ପର୍ବ)

ସେ ଦିନ ଯୁଦ୍ଧରେ ଭୀମ ଦୁଃଶାକୁ ମାରି ପାରିନି । କାରଣ ଶଲ୍ୟ ଯୁଦ୍ଧରେ ହାରିଲା ପରେ ଦୁର୍ଯ୍ୟୋଧନ ଦୁଃଶାକୁ ହସ୍ତିନା ନେଇ ଗୁଳିଗଲା । ଦୁଃଶାକୁ ହତ୍ୟା କରି ନପାରି ଭୀମ ମନ ଦୁଃଖରେ ଫେରି ଆସିଛି କୃଷ୍ଣଙ୍କ ସହିତ । ଯେଉଁ ଦ୍ରୌପଦୀ ସ୍ତ୍ରୀ ଧର୍ମ ପାଳନ କରିବାରେ ସତତ ତତ୍ପର, ଯେଉଁ ଦ୍ରୌପଦୀ ସୁରତି ପ୍ରଦାନ କରି ଭୀମର ଯୌନ କ୍ଷୁଧାକୁ ପ୍ରଶମିତ କରି ତାର ସମସ୍ତ ଆଦର ସୋହାଗ ଲାଭ କରିବାକୁ ସମର୍ଥ ଏବଂ ଯେଉଁ ଭୀମର ଅମାପ ଶକ୍ତି, ପରାକ୍ରମ ଦ୍ରୌପଦୀଙ୍କ ପାଖରେ ସହଜ ସରଳ ହୋଇଯାଏ ସେଇ ଦ୍ୱିତୀୟ ସ୍ୱାମୀ ଭୀମଙ୍କୁ ଦ୍ରୌପଦୀଙ୍କ କଟୂକ୍ତି ପାଠକର ଦୃଷ୍ଟି ଆକର୍ଷଣ କରେ । ରକ୍ତ ମାଂସ ଶରୀରର ସ୍ତ୍ରୀ ଭିତରେ ଯେଉଁ ଶକ୍ତି ସ୍ୱରୂପିଣୀ ନାରୀଟି ଆତ୍ମଗୋପନ କରି ରହିଥାଏ-ତା' ପାଖରେ ଯୌନ କ୍ଷୁଧା ଅପେକ୍ଷା ଆତ୍ମ ସମ୍ମାନର ମୂଲ୍ୟ ଅଧିକ । ନାରୀ ଶକ୍ତିର ପ୍ରତିଷ୍ଠା ହିଁ ତାର କାମ୍ୟ । କାରଣ ସେ ସୃଷ୍ଟି କର୍ତ୍ତ୍ରୀ, ପାଳନ କର୍ତ୍ତ୍ରୀ ଏବଂ ସଂହାର କର୍ତ୍ତ୍ରୀ । ଦ୍ରୌପଦୀ ଭିତରେ ଥିବା ଏଇ ଦୃପ୍ତ ନାରୀତ୍ୱ ଭୀମଙ୍କୁ ତିରସ୍କାର କରିଛି—ନିଜର ବେଣୀ ବନ୍ଧନ ହୋଇ ନ ପାରିବାରୁ । ଦ୍ରୌପଦୀଙ୍କ ହୃଦୟର ପୁଞ୍ଜିଭୂତ କ୍ରୋଧ ଜର୍ଜରିତ ଭାଷାକୁ ରୂପ ଦେଇଛନ୍ତି ଲୋକକବି ଜଗନ୍ନାଥ ପାଣି—

"ନଷ୍ଟସ୍ତ୍ରୀ ଜାଣିଲେ କେଶବ । ଶୃଗାଳ ଅଟ ତୁମ୍ଭେ ସବ ॥
ଛୁଗଲ ମାରିଣ ହରଷ । ଦୁଃଶା ମୋ ଧରିନେଲା କେଶ ॥
ନ ଜାଣି ପ୍ରତିଜ୍ଞା ମୁଁ କଲି । ଆଜ ହିଁ କେଶ ନ ବାନ୍ଧିଲି ॥
ପନ୍ଦର ବରଷ ମୁକୁଳା । କ୍ଷେତ୍ରୀପତି ଦିନ ଭୋଗ ଗଲା ॥
ସଭାର ତଳେ ଭୀମସେନ । ପ୍ରତିଜ୍ଞା କହିଲ ବଚନ ॥

ବୋଇଲେ ଦୁଃଶାସନ ଭୂଜ । ଉପାନ୍ତ କରିବ ତୋ କାର୍ଯ୍ୟ ॥
ସ୍ୱଭାବେ ମୁଁ ତୁମ୍ଭ ଭାରିଯା । ତୁମ୍ଭେ ତ ଅଛ କାହିଁ ଲଜ୍ୟା । ”
(କର୍ଣ୍ଣ ପର୍ବ)

ଶ୍ରୀକୃଷ୍ଣଙ୍କ ଉପସ୍ଥିତିରେ ଭୀମଙ୍କ ସମେତ ପଞ୍ଚ ସ୍ୱାମୀଙ୍କୁ ପତିବ୍ରତା ନାରୀ ଦ୍ରୌପଦୀଙ୍କର ଏ ଯେଉଁ ତିରସ୍କାର ଏବଂ ଲଜ୍ଜା ଜନକ ବ୍ୟବହାର; ତାହା ପାଠକଙ୍କୁ ସ୍ତମ୍ଭୀଭୂତ କରିଥାଏ । ପାଠକ ସମ୍ମୁଖରେ ଅଗ୍ନି ସଂଭୂତା ପାଣ୍ଡବ ଘରଣୀ ଦ୍ରୌପଦୀ ସ୍ଥାନରେ ଆସି ଉଭା ହୁଏ ଗୋଟିଏ ସାଧାରଣ ଗାଉଁଲି ଅଶିକ୍ଷିତା ନାରୀ । ଯିଏ କି ନିଜ ଅଜ୍ଞତା ଯୋଗୁଁ ସ୍ୱାମୀଙ୍କୁ ଲାଞ୍ଛନା ଦେଇ ପାରେ । ତିରସ୍କାର କରି ପାରେ ।

ଦ୍ରୌପଦୀଙ୍କ ଭିତରେ ଥିବା ଦୃପ୍ତ ନାରୀତ୍ୱର ସତ୍ତିଟି ଲକ୍ଷ ବିନ୍ଧା ସ୍ୱୟମ୍ବର ସଭାରେ ମଧ୍ୟ ଅନ୍ୟ ଏକ ଉଜ୍ଜ୍ୱଳ ସତ୍ତା ଭିତରେ ଆତ୍ମ ପ୍ରକାଶ କରିଛନ୍ତି । ସ୍ୱୟମ୍ବର ସଭାର ମେଡ଼ ଉପରେ ବସି ସଭାସ୍ଥିତ ରାଜା ମାନଙ୍କୁ ନିରୀକ୍ଷଣ କରି ସେ ଆନମନା ହୋଇଛନ୍ତି । ମନ ଭିତରେ ତାଙ୍କର ବିଷାଦର ଛାୟା ଖେଳି ଯାଇଛି । କୁମାରୀଟିଏ ସ୍ୱୟମ୍ବର ସଭାରେ ଯେଉଁ ସ୍ୱପ୍ନ ଏବଂ ଶୀହରଣ ଭିତରେ ଘୂରି ବୁଲିବା କଥା ତାହା ଦ୍ରୌପଦୀଙ୍କ ପାଖରେ ସମ୍ଭବ ହୋଇନି । ତାଙ୍କ ପାଇଁ ଉପଯୁକ୍ତ ସ୍ୱାମୀ ଯେ ସଭା ମଧ୍ୟରେ ନାହାନ୍ତି ଏ କଥା ଯେମିତି ତାଙ୍କ ମନ ଭିତରେ କିଏ ବାରମ୍ବାର ପ୍ରତିଧ୍ୱନିତ କରିଛି । ଅପ୍ରାପ୍ତିର ହତାଶା ବୋଧ ତାଙ୍କୁ ଭାରାକ୍ରାନ୍ତ କରି ପକାଇଛି । ଯାହାର ମାର୍ମିକ ସ୍ୱର—

"ଲକ୍ଷ ବିନ୍ଧିବା ଭଲ କାହିଁ । ଏଥିରେ ନ ଦେଖଇ ମୁହିଁ ।
ମୋହର ସ୍ୱାମୀ ଏଥେ ନାହିଁ । ଏ ଲକ୍ଷ ବିନ୍ଧିବେଟି କାହିଁ । ”
(ଆଦ୍ୟ ପର୍ବ)

ବାସ୍ତବିକ ଚମତ୍କାର ହୋଇଛି । ଏହା ଛଡ଼ା ପ୍ରତ୍ୟେକ ରାଜାଙ୍କର ଲକ୍ଷ ବିନ୍ଧା ସମୟରେ ଏବଂ ଅର୍ଜ୍ଜୁନଙ୍କ ଲକ୍ଷ ବିନ୍ଧା ସମୟରେ ଦ୍ରୌପଦୀଙ୍କ ମନର ପରିଭାଷା ଖୁବ୍ ବାସ୍ତବ ହୋଇଛି ।

ମୋଟ ମୋଟି ଭାବେ କହିବାକୁ ଗଲେ ଉପର ଆଲୋଚିତ କେତୋଟି ନିର୍ଦ୍ଦିଷ୍ଟ ଚରିତ୍ର ମାନଂକର ମନସ୍ତାତ୍ତ୍ୱିକ ଚେତନାର ସଫଳ ରୂପାୟନ ସେ କେବଳ ମହାଭାରତର ପୃଷ୍ଠାକୁ ଉଦ୍ଯୋତ୍ତୀର୍ଣ୍ଣ କରିଛି ତା ନୁହେଁ ଅନେକ ଚରିତ୍ରର ବାହ୍ୟ ଏବଂ ଅନ୍ତଃ ସ୍ୱରୂପ ଯଥାର୍ଥ ଉଦ୍‌ଘାଟନ କରି କବି ଏହାକୁ ବାସ୍ତବାନୁରଞ୍ଜିତ କରି ପାରିଛନ୍ତି । ଜଣେ ସଫଳ ମନସ୍ତତ୍ତ୍ୱବିତ୍-କବି ଭାବେ କବି ଜଗନ୍ନାଥ ପାଣି ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ସମ୍ମାନର ସେ ଅଧିକାରୀ; ଏହା ନିଃସନ୍ଦେହରେ କୁହାଯାଇ ପାରେ ।

—*—

* ପ୍ରାଧ୍ୟାପକ, ଓଡ଼ିଆ ବିଭାଗ, ବି ଜେ ବି କଲେଜ, ଭୁବନେଶ୍ୱର ।

# ଓଡ଼ିଶାର ଆଦ୍ୟ ଗୀତିନାଟ୍ୟକାର ଜଗନ୍ନାଥ ପାଣିଙ୍କୁ-ଏକ ବିନମ୍ର ଶ୍ରଦ୍ଧାଞ୍ଜଳୀ

**ଇନ୍ଦୁଭୂଷଣ କର**

ଓଡ଼ିଶାର ଲୋକନାଟ୍ୟ ପରମ୍ପରାକୁ ଯେଉଁ କେତେଜଣ ଓଡ଼ିଶାର ସାରସ୍ୱତ ସାଧକମାନେ ସମୃଦ୍ଧି ଶାଳୀ କରିଛନ୍ତି ସେମାନଙ୍କ ମଧ୍ୟରେ ଗୀତିନାଟ୍ୟକାର ଜଗନ୍ନାଥ ପାଣିଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଓଡ଼ିଶାର ଲୋକ ସାହିତ୍ୟକୁ କବି ଜଗନ୍ନାଥ ପାଣିଙ୍କ ଅବଦାନ ଅତୁଳନୀୟ ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ଭାଷାର ଅଗ୍ରଗତି ଏକ ସଙ୍କଟମୟ ଓ ସଂଘର୍ଷମୟ ପରିସ୍ଥିତି ମଧ୍ୟରେ ଗତି କରୁଥିଲା ବେଳେ, ଜଗନ୍ନାଥ ପାଣି ତାଙ୍କ ସାରସ୍ୱତ ସାଧନା ବଳରେ ବହୁ ଲୀଳା ସୁଆଙ୍ଗ ଓ ଗୀତାଭିନୟ ରଚନା କରି ଓଡ଼ିଆ ଭାଷା ସାହିତ୍ୟକୁ ପ୍ରସାର କରିବା ସଙ୍ଗେ ସଙ୍ଗେ ତାର ବୈଶିଷ୍ଟ୍ୟ ଓ ଲୋକପ୍ରିୟତା ପ୍ରତି-ପାଦନ କରିଯାଇଛନ୍ତି । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ, ତାଙ୍କର ପଟ୍ଟଶିଷ୍ୟ ବୈଷ୍ଣବ ପାଣି ଓଡ଼ିଆ ଲୋକନାଟ୍ୟ ମାଧ୍ୟମରେ ଜନ ଜାଗରଣ କ୍ଷେତ୍ରରେ ବିପ୍ଳବ-ସୃଷ୍ଟି କରି ପାରିଥିଲେ ।

ଲୋକ-ନାଟକ ମାଧ୍ୟମରେ ସମାଜ-ସଂସ୍କାର ଜନ ସଚେତନତା ସୃଷ୍ଟି କରିବାର ବୈଷ୍ଣବ ପାଣି ଯେଉଁ କୃତିତ୍ୱ ହାସଲ କରିଥିଲେ, ତାର ପ୍ରେରଣା ଦାତା ଥିଲେ ନାଟ୍ୟକାର ଜଗନ୍ନାଥ ପାଣି । ଓଡ଼ିଶାର ଆଦ୍ୟ କବି ସାରଳା ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣଙ୍କର ଜଣେ ସୁଯୋଗ୍ୟ ଉତ୍ତର ଦାୟାଦ ଭାବରେ, ଜଗନ୍ନାଥ ପାଣି, ଓଡ଼ିଆ ସାହିତ୍ୟ ଓ ଲୋକ ସଂସ୍କୃତିର ପଥ ପ୍ରଦର୍ଶକ ଓ ଜଣେ ଶ୍ରେଷ୍ଠ ସାରସ୍ୱତ ସାଧକ । ଆଜି ତାଙ୍କର ଆଦର୍ଶ ଓ ସ୍ୱାଭିମାନରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହେବାର ଆମ ଓଡ଼ିଆ ମାନଙ୍କ ଏକାନ୍ତ ଜାତୀୟ କର୍ତ୍ତବ୍ୟ ବୋଲି ମନେ କରେ । ଏହି ଅବସରରେ ଏହି ଆଦ୍ୟ ଗୀତିନାଟ୍ୟକାରଙ୍କ ଜୀବନୀ ଓ ସାହିତ୍ୟିକ କୃତି ସମ୍ପର୍କରେ ଆଲୋଚନା କରିବା ଏକାନ୍ତ ସମୀଚୀନ ଓ ପ୍ରାସଙ୍ଗିକ ହେବ ।

ଜଗନ୍ନାଥ ପାଣି, ତତ୍କାଳୀନ ବାଲେଶ୍ୱର ଜିଲ୍ଲା ଅଧୁନା ନବ ଗଠିତ ଭଦ୍ରକ ଜିଲ୍ଲାର ଭଦ୍ରକ ସହରଠାରୁ ୫ କିଲୋମିଟର ଦୂରରେ ଅବସ୍ଥିତ ନଲାଙ୍ଗ ଗ୍ରାମରେ ୧୮୬୬ ମସିହା ଏପ୍ରିଲ୍ ୧୪ ତାରିଖ ମହାବିଷୁବ ସଂକ୍ରାନ୍ତି ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଭଗବତ ପ୍ରସାଦ ପାଣି ଓ ମାତାଂକ ନାମ ରଙ୍ଗବତୀ । ଜଗନ୍ନାଥ ପାଣି ନିଜ ସାଧନା ବଳରେ ବହୁ ପୁସ୍ତକ ଅଧ୍ୟୟନ କରି, ଛାନ୍ଦ, ଅଳଂକାର ସଙ୍ଗୀତ ଓ ଚିତ୍ର ବିଦ୍ୟା ପ୍ରଭୃତି, ବହୁ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ସେ ୧୮ ବର୍ଷ ବୟସରେ, ଭଦ୍ରକ ସହରର ଅନତି ଦୂରରେ ଅବସ୍ଥିତ ଗରଦପୁର ଗ୍ରାମର ପାଟଦେବୀଙ୍କୁ ବିବାହ କରିଥିଲେ । କିନ୍ତୁ, ପାଟଦେବୀ ନିଃସନ୍ତାନ ହେବାରୁ, ତାଂକର ଅନୁରୋଧ କ୍ରମେ ସେ, ତାଂକ ସାନ ଭଉଣୀ ସୁନାଦେବୀଙ୍କୁ ବିବାହ କରିଥିଲେ । ସୁନା ଦେବୀଂକ ଗର୍ଭରୁ, ତିନୋଟି ପୁତ୍ର ସନ୍ତାନ ଜାତ ହୋଇଥିଲା । ପାରିବାରିକ ଅଭାବ ଅନାଟନ ଭ୍ରୂକ୍ଷେପ ନ କରି, ଜଗନ୍ନାଥ ପାଣି କାବ୍ୟ, ଛାନ୍ଦ, ଗୀତିନାଟ୍ୟ ରଚନା କାୟମନୋବାକ୍ୟରେ ମନୋନିବେଶ କରି ପ୍ରାୟ ୫୩ ଖଣ୍ଡ ଓଡ଼ିଆ ପାଣ୍ଡୁଲିପି ରଚନା କରି ପାରିଥିଲେ । ଜଣେ ଗଣ କବି ଭାବରେ, ତାଙ୍କର କାବ୍ୟ-ପ୍ରତିଭାର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଖିବାକୁ ମିଳେ ତାଙ୍କ ଦ୍ୱାରା ରଚିତ, "ପ୍ରମୋଦ ଚନ୍ଦ୍ରମଣି" ଓ "ବ୍ରଜ ମନୋହର" କାବ୍ୟ ଦୁଇଟି ମଧ୍ୟରେ । "ପ୍ରମୋଦ ଚନ୍ଦ୍ରମଣି" କାବ୍ୟଟି ଚଉତିରିଶ ଛାନ୍ଦରେ ବିଭକ୍ତ । ଛାନ୍ଦଗୁଡ଼ିକ, ଓଡ଼ିଆ ଚଉତିଶା ପରି 'କ'ଠାରୁକ୍ଷ ଅକ୍ଷର କ୍ରମରେ ରଚିତ । ଛାନ୍ଦ, ଚଉତିଶା, ସୁଆଙ୍ଗ ବ୍ୟତୀତ, ୧୭ଟି, ଗୀତିନାଟ୍ୟ ଲେଖି, ଜଗନ୍ନାଥ ପାଣି ଓଡ଼ିଆ ଲୋକ ନାଟ୍ୟ ସାହିତ୍ୟକୁ ରୁଦ୍ଧିମନ୍ତ କରିବା ସଙ୍ଗେ, ସଙ୍ଗେ ନିଜେ ବହୁ ଶ୍ରମସ୍ୱୀକାର କରି ନିଜର "ଯାତ୍ରା ଦଳ" ଗଠନ କରି ଓଡ଼ିଶା ଓ ଓଡ଼ିଶା ବାହାରେ ପୁରପଲ୍ଲୀରେ ଏକ ବଳିଷ୍ଠ ଜନ-ଜାଗରଣ ସୃଷ୍ଟି କରି ପାରିଥିଲେ । ଏଥିରୁ ପ୍ରମାଣିତ ହେଉଛି ଯେ ସେ ଜଣେ ଶ୍ରେଷ୍ଠ ନାଟ୍ୟ ନିର୍ଦ୍ଦେଶକ ଓ ନାଟ୍ୟ ସଂଗଠକ ଥିଲେ । ଓଡ଼ିଆ ଭାଷା କାବ୍ୟର ମଧ୍ୟ ରଚୟିତା ଥିଲେ । ନାଟ୍ୟ ସାହିତ୍ୟ ମାଧ୍ୟମରେ ଜନଜାଗରଣ ଓ ସମାଜ ସଂସ୍କାରସହ ଆତ୍ମ ନିୟୋଗ କରିବା ତାଙ୍କର ଆଦର୍ଶ ଥିଲା । ନାଟକ - ପ୍ରଯୋଜନା ଓ ପରିବେଷଣରେ ତାଙ୍କର ଦୁଇଟି ଲକ୍ଷ୍ୟ ଥିଲା ପ୍ରଥମତ—ପୁରପଲ୍ଲୀର ଅଗଣିତ ଓଡ଼ିଆମାନଙ୍କ ମନରେ ନାନ୍ଦନିକ ଆନନ୍ଦ ଦେବା ଓ ଦ୍ୱିତୀୟରେ ଏହି ଆମୋଦ ପ୍ରମୋଦ ମାଧ୍ୟମରେ ଦର୍ଶକ ମାନଙ୍କ ସାମାଜିକ ରୁଚିର ପରିବର୍ତ୍ତନ କରି, ସମାଜର ପ୍ରଗତିରେ ଜନ ସଚେତନାତା ସୃଷ୍ଟି କରିବା । ଏହି ଆଭିମୁଖ୍ୟ ଦୃଷ୍ଟିରୁ ବିଚାର କଲେ, ଜଗନ୍ନାଥ ପାଣି ଜଣେ ସଫଳ ନାଟ୍ୟକାର, ଅଭିନେତା ଓ ନିର୍ଦ୍ଦେଶକ ଥିଲେ । ତାଙ୍କ ଦ୍ୱାରା ରଚିତ "ରୁକ୍ମଣୀ ପରିଣୟ", ସୁଭଦ୍ରା ପରିଣୟ, ସୀତା ବନବାସ, ଦକ୍ଷ ଯଜ୍ଞ, ଲକ୍ଷ୍ମଣ ଶକ୍ତିଭେଦ ଭୂତକେଳି ପାରିଜାତ ହରଣ, କପଟପାଶ, ଧ୍ରୁବ ଚରିତ, ପ୍ରହ୍ଲାଦ ଚରିତ, ବଭ୍ରୁବାହନ

ମୁଦ୍ରିକ ପ୍ରଭୃତି ଗୀତିନାଟ୍ୟ ଓଡ଼ିଆ ପୁରପଲ୍ଲୀରେ ଅବସର ବିନୋଦନ କ୍ଷେତ୍ରରେ, ଆନନ୍ଦ ଓ ଉଲ୍ଲାସ ସୃଷ୍ଟି କରିପାରିଥିଲା । ତାଙ୍କ ଏହି ସାରସ୍ୱତ କୃତି ସମ୍ପର୍କରେ ଓଡ଼ିଶାର ବରେଣ୍ୟ ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟଙ୍କ ଉକ୍ତି ପ୍ରଣିଧାନ ଯୋଗ୍ୟ । ଗୋପାଳ ଛୋଟରାୟଙ୍କ ଭାଷାରେ "ଜଗନ୍ନାଥ ପାଣି ହେଉଛନ୍ତି ଆମର ପରମ ପୂଜ୍ୟ ଆଦି ଗୀତିନାଟ୍ୟକାର । ଏଠାରେ ଗୋଟିଏ କଥାରେ ମୁଁ କହିବି ଯେ ତାଙ୍କ ଗୀତିନାଟ୍ୟ ରଚନାରେ ଅଖଣ୍ଡ ସାଙ୍ଗୀତିକ ମୂଲ୍ୟ ସହିତ ଅଖଣ୍ଡ ସାରସ୍ୱତ ମୂଲ୍ୟ ବିଦ୍ୟମାନ ।"

ଆଧୁନିକ ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ସିନେମା, ଟି.ଭି, ଭି.ସି.ଆର ପ୍ରସାର ଫଳରେ ଯେତେବେଳେ ପ୍ରୋସିନିଅମ୍ ଥିଏଟରର ଅବନତି ଓ ଅବଲୁପ୍ତି ଘଟୁଛି ଯେତେବେଳେ ଦେଶୀୟ ତଥା ବିଦେଶୀ ସିନେମା ଓ ଥିଏଟରରେ ହିଂସା ଓ କାମୋଦ୍ଦୀପକ ଦୃଶ୍ୟମାନ ଓଡ଼ିଆ ଦର୍ଶକମାନଙ୍କ ମନରେ ଅଧିକ ବିତୃଷ୍ଣା ସୃଷ୍ଟି କରୁଛି ସେତେବେଳେ ଓଡ଼ିଶାର ସହର ଓ ଓଡ଼ିଶା ପୁରପଲ୍ଲୀରେ, ଜଗନ୍ନାଥ ପାଣି ଓ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟର ପୁନ ସମ୍ପ୍ରସାରଣ ହେବା ସମୀଚୀନ ବୋଲି ମୁଁ ମନେ କରେ । ଓଡ଼ିଶାରେ ଜନ-ଶିକ୍ଷା ନିଳୟ ପ୍ରକଳ୍ପ ମାନଙ୍କରେ, ଜଗନ୍ନାଥ ପାଣିଙ୍କ ଦ୍ୱାରା ରଚିତ କେତେକ ସମାଜ ସଂସ୍କାରମୂଳକ ଗୀତିନାଟ୍ୟ ପରିବେଷଣର ବହୁଳ ପ୍ରସାର ହେବା ଉଚିତ ବୋଲି ମୁଁ ଅନୁଭବ କରୁଛି ।

ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ, ଏହି ଆଦି ଗୀତିନାଟ୍ୟକାର ଜଗନ୍ନାଥ ପାଣିଙ୍କ ଜୟନ୍ତୀ ଉତ୍ସବରେ ମୁଁ ସେହି ମହାନ୍ ସାରସ୍ୱତ ସ୍ରଷ୍ଟାର ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ଓ ଆଶା କରୁଅଛି ଯେ ଓଡ଼ିଶାର, କଳାପ୍ରେମୀ ବୁଦ୍ଧିଜୀବି କବି, ନାଟ୍ୟକାର ଓ ସାରସ୍ୱତ ସାଧକମାନେ ଜଗନ୍ନାଥ ପାଣିଙ୍କ ଆଦର୍ଶ ଓ ଓଡ଼ିଆ ଜାତୀୟ ସ୍ୱାର୍ଥମାନରେ ଉଦବୁଦ୍ଧ ହୋଇ, ଏହି କଳା-ସାହିତ୍ୟ ପରିପୂର୍ଣ୍ଣ ମନ୍ଦିର ମାଳିନୀ ଭୁବନେଶ୍ୱରରେ ଜଗନ୍ନାଥ ପାଣିଙ୍କ ସ୍ମୃତି ଉଦ୍ଦେଶ୍ୟରେ ତାଙ୍କ ନାମରେ ଏକ ସ୍ଥାୟୀ ରଙ୍ଗମଞ୍ଚ ଓ ମୁକ୍ତାଙ୍ଗନ ନିର୍ମାଣ ପାଇଁ ସଂକଳ୍ପବଦ୍ଧ ହେବେ ।



* ସମ୍ପାଦକ, ଓଡ଼ିଶା ସାହିତ୍ୟ-ଏକାଡେମୀ, ଭୁବନେଶ୍ୱର



କବିଙ୍କ ଜନ୍ମସ୍ଥାନ ନଳାଙ୍ଗସ୍ଥ ସମାଧି ପୀଠରେ
ଜଗନ୍ନାଥ ପାଣିଙ୍କ ସ୍ମୃତି ମଣ୍ଡପ

# ଏହି ଆମ ଅଳି

ଦୁର୍ଗାମାଧବ ମିଶ୍ର

ଆମେ ସବୁ
ମହାରାବଣର ଦାୟାଦ
ଆମ ଭିତରୁ ମାଡ଼ିଯାଏ ନିଭଷ୍ଟୁମ୍ବୀ 'ନାଉରୁ'—
ଆବର୍ଜନାର,
ଦମ୍ଭ, ଦର୍ପ, ଅଭିମାନ ଓ କ୍ରୋଧର ।
କର୍କଶ ଆମର କଥା
ବିଷୟକୁ ଧ୍ୟାୟି ଧ୍ୟାୟି
ଆହା ଆମେ କେଡ଼େ ସମରଥା !!

ସତ୍ତ୍ୱଶୁଦ୍ଧ ଜ୍ଞାନଯୋଗୀ ରାମ
ଶତ୍ରୁ ଆମ
ମାୟାବଳେ ନାଶିବୁଁ ତାହାଙ୍କୁ
ପାତାଳର କୁସଂସ୍କାର ଡାକେ ଚୂ···ଚୂ···
ଧରପୃଷ୍ଠେ ଆତସବାଜିର କୁହୁକ
ନିଜ ଖଡ୍ଗରେ କାଟି ନିଜ ବେକ ।

ଦ୍ୱାର ଦ୍ୱାର ବୁଲି
ଭିକ୍ଷାଂ ଦେହି ··ଭିକ୍ଷାଂ ଦେହି
ମନ, ବୁଦ୍ଧି, ଅହଙ୍କାର, ଚଉର ବଡାଇ
ଦେଖାଇ···ଦେଖାଇ···
ଚିର ନିଦ୍ରା ଆସିବ ଆମର
ତା'ପରେ ?
ତା'ପରେ ରୌରବ ଓ କୁମ୍ଭୀପାକ
ହାହାକାର··ଖାଲି ହାହାକାର·····
ହୋଇ ପାରିଲୁନି ଆମେ ଦସ୍ୟୁ ରତ୍ନାକର
ସଂସାରର ଆଦ୍ୟ ଶ୍ଳୋକକାର ।

ଚପଳ ହରିଣୀ ସମ
କନ କନ ଦୁଇ ଆଖି ଡୋଳା
କେଉଁଠାରେ ନିବନ୍ଧ ହୁଗୁଲା
କେଉଁଠାରେ ରହିଗଲା ଜଳା
ଉଖାରି ଉଖାରି ତାକୁ କରିଦେଲୁ ବଡ଼
ସମ୍ମୁଖରେ ମାଷ୍ଟର ପାହାଡ଼ ।

ନେତା ତୁମେ
ଜନ୍ମିଥିଲ ନିଶ୍ଚେ ଧରାଧାମେ
ଲୋକମାନେ ଚୂଲ ଚେନ୍ନ କତି
ଧାଡ଼ି ଧାଡ଼ି ଠିଆ କର
ରାବଣ, ମହୀରାବଣ
କୁମ୍ଭକର୍ଣ୍ଣ, ଇନ୍ଦ୍ରଦ୍ୟୁମ୍ନ
ଭଲ କରି ଚିହ୍ନି ରଖୁଁ ଭ୍ରାତାଙ୍କ ବଦନ ।

ଦୂରଦ୍ରଷ୍ଟା ସତ୍ୟଦ୍ରଷ୍ଟା ତୁମେ
ତୁମ ପୂତ ଲେଖନୀର ମୁନେ
ବିଦାରି ଅନ୍ତ୍ରବୃଜୁଲା
ଧରି ହାତେ ନିଆଁ ହୁଲା
ଗାଆଁରୁ ଗାଆଁକୁ ବୁଲି
କାଳିଆ ହବୁ ଦରେ ଚୁଲି
ନାଶ କର ଅଜ୍ଞାନ କୁହେଳି ।
ତୁମ ପୂତ ଜନ୍ମଦିନେ
ନିଅ ଆମ ଅଳି



"ଚନ୍ଦ୍ରାଲୋକ"
ପ୍ଲଟ ନଂ ଡି-୯, ବଜେବ ନଗର
ଭୁବନେଶ୍ୱର -୭୫୧୦୧୪

# ॥ ନାହିଁ କଳାକାର ରହିଛି କଳା ॥

ଅଚ୍ୟୁତାନନ୍ଦ ସାମଲ

ଗାଆଁ ନାଆଁ କେହି ନଥିଲେ ଜାଣି
କପାଳୀ ନଇ ସେ କାହାଣୀ କହେ
ନଳ ବଣ ଥିଲା ତାହାକୁ ଘେରି
ଅସଲ ବ୍ରାହ୍ମଣ ଶାସନ ଟିଏ ॥
ଭଗବତ ପୁଅ ଖର ଚଗଲା
ଗୃହିଲା ଶଗଡେ ମାରଇ ହାତ
ଗୃହାଲୀ ଦୁଆର ମାଡ଼ିନ କେବେ
ଖାଇନ ସେ ଅବଧାନଙ୍କ ବେତ ॥
"ନଳେଶ୍ୱର ଖର ପ୍ରତାପୀ ହଅଁ
ଏକୋଇଶ ଦିନ ଅଧିଆ ପଡ଼ି"
ପାଇଲା ବୁଦ୍ଧି ସେ ଗାଇଲା ଗୀତ
ସବୁ ବେଳେ ଆଗେ ଗଲା ସେ ମାଡ଼ି ॥
ବଙ୍ଗ, ବିହାର ମୁଲକ କାହିଁ
ନଳାଙ୍ଗ ଗାଆଁର ନାନ୍ହୁଅ ପିଲା
ଲେଖିଲା ନାଟକ, ସୁଆଙ୍ଗ କେତେ
ଯୁଆଡ଼େ ଗଲା ତା ନାଆଁ ଉଠିଲା ॥
ଓଡ଼ିଆ ଜାତିର ସାଇତା ଧନ
ଜଗନ୍ନାଥ ପାଣି ଲେଖିଛି ଯାହା
ଗୀତ ନାଟକର ସେ ଶୁଭ ଦାତା
ଆଜି ଯାଏ ତାର ରହିଛି ନାଆଁ ॥
ବହି ଗଲାଣି ତ ସମସ୍ତ ସୁଅ
କେତେ କେ ଗଲେଣି ହିସାବ ନାହିଁ
କପାଳୀର ଜଳ ଚହଲି ଗଲେ
ନାଚ ଉଠେ ସେଇ ଅତୀତ ସ୍ମୃତି ॥
ପ୍ରଭୁ ନଳେଶ୍ୱର ମଉନ ହୋଇ
ଦେଖୁଛନ୍ତି ସେଇ ଭୁଇଁର ଲୀଳା
କି ଥିଲା ସେ ଦିନ କହେଲା ଆଜି
ନାହିଁ କଳାକାର ରହିଛି କଳା ॥

* ସା./ପୋ-ଭଣ୍ଡାରି ପୋଖରୀ, ଜି-ଭଦ୍ରକ—୭୫୬୧୨୦

# ସ୍ମୃତି ଓ ସ୍ୱପ୍ନ

ବିମଳ ପ୍ରସନ୍ନ ଦାସ *

କେମିତି ମୁହୂର୍ତ୍ତ ଯେ
ଗୋଟିଏ ଆଖିରେ ହସର ଫଗୁଣ ତ
ଆର ଆଖିରେ ଲୁହର ଶ୍ରାବଣ
ମାଟିର ଗୁଡରେ
ଶିଶିରର ଅମାପ ଅଶ୍ରୁ ।
କେଉଁଠି ଝରିଯିବାର
ବ୍ୟାକୁଳ ବ୍ୟଥିତ ବେଦନା ତ
କେଉଁଠି ଫୁଟିବାର
ଅଫୁରନ୍ତ ଆକାଙ୍‌କ୍ଷା
ଅପରିଚିତକୁ ସାଉଁଟିବା ପାଇଁ
ବ୍ୟାକୁଳତା ଭିତରେ
ଅତୀତର ଘଟଣାକୁ
ସ୍ମୃତିର ଝତାରେ ଆଉଟିବାର
ଏ ମୁହୂର୍ତ୍ତ
କାନ୍ଥର ପୁରୁଣା
କ୍ୟାଲେଣ୍ଡରର ଉପରେ
ବୟସର ଧୂଳି
ପୋଛିବା ବେଳାରେ
ଝରିବା ଫୁଟିବା
ସ୍ମୃତି ଓ ସ୍ୱପ୍ନର
ମଧୁର ବେଦନା ମଧ୍ୟରେ
ଜୀବନର ବେଳା ଭୂଇଁରେ
ଶୈଶବ ବାଲିର ଖେଳ
ବିଦାୟର ବିଷର୍ଣ୍ଣ ଗୋଧୂଳି
ଆଉ ନୂତନର ଶୁଭ ସାହାନାଇ ।

* ପ୍ରୋଜେକ୍ଟ ଡିରେକ୍ଟର, କାଡ଼ା, କଟକ

# ତୁମ ପାଇଁ ମୁଁ ଇତିହାସ ହୋଇଯାଏ

ସତ୍ୟବ୍ରତ ନନ୍ଦ

ତୁମେ ଆଉ ପାଖରେ ଥାଇ
ହସୁଛ କି ନା ଜାଣେନା
ମୁଁ କିନ୍ତୁ ହସୁଛି
ହସି ହସି ବେଦମ ହେଉଛି
ତନ୍ମୟ ହେଉଛି

ତୁମ ପ୍ରେରଣାରେ ପ୍ରଭାବିତ ହେଉଛି
ତୁମ ପାଇଁ ସାଧନା କରିବାକୁ
ଇଚ୍ଛା ହେଉଛି
ଡେଣା ଦୁଇଟିକୁ ରଙ୍ଗୀନ୍ କରି
ଉଡ଼ି ବୁଲିବାକୁ ଏକ ପ୍ରାନ୍ତରୁ
ଅପର ପ୍ରାନ୍ତ ଯାଏ ।

ତୁମେ ଆଶୀର୍ବାଦ କର
ଲେଖନୀ ମୋ ବକ୍ର ହେଉ
ଶାଣିତ ହେଉ ମୋର ପ୍ରତିଟି ଶବ୍ଦ
କଳ୍ପନାର କଳ୍ପାତୀତ

ଭାବ କଳ୍ପ ଛନ୍ଦ କଳ୍ପ ଯାଏ
ସବୁ ତତ୍ତ୍ୱ ଓ ତଥ୍ୟ ମୋର
ଉଜ୍ଜ୍ୱଳିତ ହେଉ ମୋର କାବ୍ୟ କବିତାରେ

ତୁମରି ପାଇଁ ଜୀବନର କଥା କହି
ମଣିଷର କଥା କହି
ମୁଁ ଇତିହାସ ହୋଇଯାଏ
ତୁମରି ପାଇଁ ।



# ସାରସ୍ୱତ ସାଧନାର ଉତ୍ସ

ସ୍ୱପ୍ନାଞ୍ଜଳୀ ନାୟକ

ଦେଖି ନାହିଁ ତୁମ ସାଧନାର ପଥ
ଦେଖିନି ତୁମର ସତ୍ୟ ରୂପ
ଦେଖିନି ତୁମର କଳା ଅଭିନୟ
ଦେଖିଛି କେବଳ ସୃଷ୍ଟି ଦୀପ

ପୁରାଣର ସେହି ଗର୍ଣ୍ଣି ଭିତରୁ
ଖୋଜି ଖୋଜି ଯେତେ ଆଖ୍ୟାୟିକା
ଜୀବନ୍ତ କରିଛ ଲେଖନୀ ମୁନରେ

କେତେ ଚରିତର ମୁକ୍ତ ଶିଖା
କାବ୍ୟ ନାଟକ ରଚନା ଭିତରେ
ବଢୁଛି ତୁମର ସୃଷ୍ଟି କାଳ

ସଗଠନର ଯାତ୍ରା ପଥରେ
ଯେଣ୍ଣ ଅଛ ଅବା ବିଜୟ ମାଳା
ଏ ଜାତି ଜାଣିନି ସମ୍ମାନ ଦେଇ

କରିନି ତୁମର ପ୍ରତିଭା ପୂଜା ।
ଗୋଟିଏ ଶତାବ୍ଦୀ ବିତି ଗଲେ ବି ସେ
ତଥାପି ବାଜିନି ଶଦ୍ଧ ବାଜା ।
ଆଜି ଯେତେ ବେଳେ

ମନେ ପଡ଼ ତୁମେ
ଇତିହାସ ପରି ଲାଗଇ ସବୁ
ପ୍ରତିଭା ତ କେବେ ମରି ପାରେ ନାହିଁ
କାଳ ଲେଖି ରଖେ ଚିର ଦିନକୁ ।

—*—

# ପାଣି ହେ ତୁମର

ନୀଳମଣି ସେନାପତି

ପାଣି ହେ ତୁମର
ବାଣୀ ବଇଭବ
ଗଉରବ ମନ୍ତ୍ର
ଜୀବନ ଯାତ୍ରା ପଥେ
ଅର୍ପି ଦେଲ ଯା'
ଉତ୍କଳ ଭାଷା
ଭାରତୀ ପୁଣ୍ୟ ରଥେ ।
ଗତର ଖଟାଇ
ଜୀବନ ଯୁଦ୍ଧେ
ଜୀବନକୁ ପଣ କରି
ମୁକ୍ତି ସାହାରା
ଭେଦ କରିବାକୁ
ଆଗେଇ ଆସିଲେ
ନୀଳ ପାରାବାରେ
ବାନ୍ଧି ଦେଲ ତୁମ
ଜୀବନ ମର୍ତ୍ତ୍ୟ ତରୀ ।
ଆଜି ତୁମ ପାଦେ
ଢାଳେ ମୁଁ ପ୍ରଣତି
ଦିଅ ଶୁଭାଶୀଷ ଦିଅ
ଦୃଢ଼ ହେଉ ମୋର
ଶାଣିତ ଲେଖନୀ
ସୃଜନୀର ହେଉ ଜୟ ।



# ମୋ ନିଜର ନିଜେ ମୁଁ କବିତା

ଗୀତା ହୋତା

ନିଜେ ମୁଁ ଅଟଇ କବି
ମୋ ନିଜର ନିଜେ ମୁଁ କବିତା
ମୋ ମଙ୍ଗଳ ପାଇଁ ସଂଧ୍ୟାରେ ନିତି
ଜାଳିଦିଏ ମୋ ଦୀପର ଅଲିଭା ସଳିତା ।

ତୁମେ ମୋର ପୂର୍ବ ସୁରୀ
ଉନ୍ମୋଚିତ କରିଅଛ ସାଧନାର ପଥ
ଚେତନାର ଉତ୍ତରଣ
ଉଦ୍ଭାସିତ ହୋଇଅଛି ଅଭିନବ ସୃଷ୍ଟିର ଦିଗନ୍ତ ।

ତୁମ କବିତାର ଡାଲି ଧରି
ମୋ ଓଠରେ ଫୁଟାଏ ମୁଁ ହସର ଲହରୀ
ମୋ ନୟନେ ନିଜେ ମୁହିଁ ଅଶ୍ରୁ ନିଏ ଭରି ।
ତୁମ ଛନ୍ଦ ରାଗିଣୀରେ ବିଧୂରି ମୁଁ
ପୋଛି ଦିଏ ଲୁହ ଚକ୍ଷୁ ବସନ ଅଞ୍ଚଳେ
ମନ କୁଞ୍ଜେ ବାଜିଲେ ବଇଁଶୀ
ନୂପୁର ବଜାଇ ନାଚେ ରାଧିକା ବେଶରେ ।
ତୁମର ଆଦର୍ଶ ମତେ ବାଧ୍ୟ କରେ
ଧରିବାକୁ ଲେଖନୀ ହାତରେ ।
ନିର୍ଜନ ନିଶିଥେ ଏକା ଏକା ଶୋଇ
ପରାଣ କୁଞ୍ଜେ ଯେବେ ଫୁଲ ଫୁଟେ
ନିଃସଙ୍ଗତା ହଜି ଯାଏ
ହଜି ଯାଏ ଯେବେ ତୁମ କବିତା ସାଙ୍ଗରେ ।

ଏ ବିରାଟ ବିଶ୍ୱେ ଆଜି ଏକା ଏକା
ହସି କାନ୍ଦି ଅନ୍ଧାର ଆଲୋକେ
ଏକାକାର ଜୀବନର ମଧୁ ମାଦକତା
ଆଉ କିଛି ବୁଝେନି ମୁଁ
ତୁମ ଦୃଢ଼ ଆଦର୍ଶରେ ଲେଖୁଅଛି ମୋ ନିଜର ନିଜେ ମୁଁ କବିତା ।





ଜନ୍ମସ୍ଥାନ ନଳାଙ୍ଗ ଶାଶନରେ କବିଙ୍କ ବାସଗୃହ

*With best compliments from ;*

# Command Area Development Authority, Mahanadi-Delta Cuttack

Project Director

---

ଖୁବ୍ ଶୀଘ୍ର ପ୍ରକାଶ ପାଉଛି :

## ଜଗନ୍ନାଥ ପାଣି ପରକ୍ରମା

୩ୟ ଭାଗ

ପ୍ରକାଶକ : ଜଗନ୍ନାଥ ପାଣି ସ୍ମୃତି ସଂସଦ

ଭୁବନେଶ୍ୱର

ତା ୧୪-୪-୯୪ ସନ୍ଧ୍ୟା ୭-୩୦ ମି

## ଓଡ଼ିଶାର ଆଦି ଗୀତିନାଟ୍ୟକାର ଲୋକ କବି ଜଗନ୍ନାଥ ପାଣିଙ୍କର ୧୫୯ତମ ଜୟନ୍ତୀ ଉତ୍ସବରେ ଅଭିନୟ ପରିବେଷଣ କରୁଛି କବିଙ୍କ ରଚିତ ଗୀତିନାଟ୍ୟ :

# ହାରାବତୀ ହରଣ

ମୂଳଛାନ୍ଦ : ଜଗନ୍ନାଥ ପାଣି

ମଞ୍ଚନାଟ୍ୟ ରୂପ : ଡଃ ଉପେନ୍ଦ୍ର ନାୟକ

ନିର୍ଦ୍ଦେଶନା—ହରି ଚରଣ ଦାସ

ନୃତ୍ୟ—ବ୍ରଜ ମଲ୍ଲିକ

ସଂଗୀତ—ଦିବାଧର ମହାନ୍ତି

ମଞ୍ଚ ପରିଚାଳନା—ରାମ ନାରାୟଣ ପଟ୍ଟନାୟକ

## ଭୂମିକାରେ :

| | |
|---|---|
| ଶ୍ରୀକୃଷ୍ଣ | ଯୁଧିଷ୍ଠିର ସାହୁ |
| ଇନ୍ଦ୍ର | ଯତୀନ୍ଦ୍ର ପ୍ରଧାନ |
| ବୃହସ୍ପତି | ମଦନ ମୋହନ ସାହୁ |
| ବ୍ରହ୍ମା | ପ୍ରଭାତ ମିଶ୍ର |
| ନାରଦ | ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ |
| ଶକ୍ତସେନ | ହେମନ୍ତ ମହାନ୍ତି |
| ନିକୁମ୍ଭ | ବିନାୟକ ମିଶ୍ର |
| ଦାନବ ମହାମନ୍ତ୍ରୀ | ଶରତ ଓଝା |
| ସେନାପତି | ଅରୁଣ ନନ୍ଦ |
| ନିଶଙ୍କ | ହରେନ୍ ସାହୁ |
| ମହାକାଳ | ମହେନ୍ଦ୍ର ଶତପଥୀ |
| ଯୁଧିଷ୍ଠିର | ନିରଞ୍ଜନ ଜେନା |
| ଅର୍ଜ୍ଜୁନ | ଗୟାଧର ଖୁଣ୍ଟିଆ |
| ଭୀମ | ଭାଗୀରଥି ପାତ୍ର |
| ନକୁଳ | ଇଜାକ୍ ହୁସେନ୍ ଖାଁ |
| ସହଦେବ | ସୂର୍ଯ୍ୟମଣି ରଣା |
| ଦେବ ମହାମନ୍ତ୍ରୀ | ବୃନ୍ଦାବନ ସାହୁ |
| ନଟ | ତାପସ ମହାନ୍ତି |
| ରମ୍ଭା | କୁନି |
| କାମକଳା | ଅନିତା |
| ହାରାବତୀ | ନମିତା |

୧୫ । ୪ । ୯୮ — ସନ୍ଧ୍ୟା ୭ ଘଟିକା

ଓଡ଼ିଶାର ଆଦ୍ୟ ଗୀତନାଟ୍ୟକାର ଲୋକକବି ଜଗନ୍ନାଥ ପାଣିଙ୍କର ୧୬୯ ତମ ଜୟନ୍ତୀ ଉତ୍ସବରେ ଶିଳାଶ୍ରୀ ସାହିତ୍ୟ ସଂସ୍କୃତି ପରିଷଦ ପରିବେଷଣ କରୁଛି—

ଗୀତନାଟ୍ୟ : ଉଷାବତୀ ହରଣ

ମୂଳ ଗ୍ରନ୍ଥ : ଜଗନ୍ନାଥ ପାଣି

ମଞ୍ଚ ନାଟ୍ୟରୂପ ଓ ନିର୍ଦ୍ଦେଶନା : ଡଃ ଉପେନ୍ଦ୍ର ନାୟକ

ସଙ୍ଗୀତ : ମହେଶ୍ୱର ସାହୁ

ନୃତ୍ୟ : ବ୍ରଜ ମଲ୍ଲିକ

ଭୂମିକାରେ—

ଶ୍ରୀକୃଷ୍ଣ—କୁଳମଣି ମିଶ୍ର
ବାଣାସୁର—ରବିନାରାୟଣ ନାୟକ
ଦ୍ୱାରପାଳ—ପ୍ରହ୍ଲାଦ ପ୍ରଧାନ
ବଳରାମ—ସୁରେଶ ରାଉତ
ନାରଦ—ଲକ୍ଷ୍ମୀନାରାୟଣ ପାତ୍ର
ଅନିରୁଦ୍ଧ—ରଣ୍ଟୁ ମିଶ୍ର
ମନ୍ତ୍ରୀ—କିଶୋର ମହାରଣା
ପ୍ରହରୀ—ପ୍ରମୋଦ ରାଉତ
ନନ୍ଦୀ—ଅଜୟ ବେହେରା
ଭୃଙ୍ଗୀ—ହିମାଂଶୁ ଦାସ
ପ୍ରଦ୍ୟୁମ୍ନ—ପ୍ରଫୁଲ୍ଲ ମହାନ୍ତି
ନଟ—ଆନନ୍ଦ ବାରିକ
ଶିବ—ନଟବର ମହାପାତ୍ର
ବ୍ରହ୍ମା—ନୃସିଂହ ନାୟକ
ସୂତ୍ରଧର—ପ୍ରଫୁଲ୍ଲ କୁମାର ମହାନ୍ତି
ଉଷାବତୀ—ନମିତା ଭଟ୍ଟାଚାର୍ଯ୍ୟ
ଚିତ୍ରରେଖା—ଉମାରାଣୀ ଭଟ୍ଟାଚାର୍ଯ୍ୟ

ଯନ୍ତ୍ର ସଙ୍ଗୀତରେ—

ତବଲା ଓ ଢୋଲକ—ଗନ୍ଧର୍ବ
ହାରମୋନିୟମ—ବଳରାମ
ବେହେଲା—ଗୋପୀ
କଣ୍ଠଦାନ—ମହେଶ୍ୱର, ସନ୍ତୋଷ, ଶର୍ମିଷ୍ଠା

# ପ୍ରଗତି ପଥେ ଜଗତସିଂହପୁର ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା

## ( ୧୯୯୩-୯୪ ମାର୍ଚ୍ଚ ୧୫ ସୁଦ୍ଧା )

କ) ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ (I R D P)

| | | |
|---|---|---|
| ୧) ମୋଟ ହିତାଧିକାରୀଙ୍କ ସଂଖ୍ୟା | | ୨୪୭୮ |
| ୨) ତଫସିଲ ଭୁକ୍ତ ଜାତି ଓ ଉପଜାତି ହିତାଧିକାରୀଙ୍କ ସଂଖ୍ୟା | | ୧୨୭୪ |
| ୩) ମହିଳା ହିତାଧିକାରୀଙ୍କ ସଂଖ୍ୟା | | ୧୭୨୩ |
| ୪) ହିତାଧିକାରୀଙ୍କ ନିମିତ୍ତ ମୋଟ ଆର୍ଥିକ ବ୍ୟୟ | (ଲକ୍ଷରେ) | |
| କ) ମୋଟ ଆର୍ଥିକ ସହାୟ | | ୮୨.୦୮ |
| ଖ) ମୋଟ ଆର୍ଥିକ ଋଣ | | ୧୧୯.୨୮ |

ଖ) ଆତ୍ମ ନିଯୁକ୍ତି ପାଇଁ ଗ୍ରାମାଞ୍ଚଳ ଯୁବ ସମ୍ପ୍ରଦାୟଙ୍କୁ ତାଲିମ୍ (T.R.Y.S.E.M)

| | | |
|---|---|---|
| ୧) ମୋଟ ତାଲିମ୍ ପାଇଥିବା ଗ୍ରାମ୍ୟ ଯୁବକ ଓ ଯୁବତୀଙ୍କ ସଂଖ୍ୟା | | ୫୫୨ |
| ୨) ମୋଟ ଆର୍ଥିକ ବ୍ୟୟ | (ଲକ୍ଷରେ) | ୫.୦୦ |

ଗ) ଗ୍ରାମାଞ୍ଚଳ ମହିଳା ଓ ଶିଶୁ ବିକାଶ ଯୋଜନା (D.W.C.R.A)

| | | |
|---|---|---|
| ୧) ମୋଟ ଓଳିଆ ଗ୍ରୁପର ସଂଖ୍ୟା | | ୭ |
| ୨) ମୋଟ ହିତାଧିକାରୀଙ୍କ ସଂଖ୍ୟା | | ୯୮ |
| ୩) ମୋଟ ଆର୍ଥିକ ବ୍ୟୟ | (ଲକ୍ଷରେ) | ୧.୦୫ |

ଘ) ଜବାହାର ରୋଜଗାର ଯୋଜନା ( J.R.Y )

| | | |
|---|---|---|
| ୧) ମୋଟ କର୍ମ ଯୋଗାଣର ଶ୍ରମ ଦିବସ | (ଲକ୍ଷରେ) | ୫.୪୭ |
| ୨) ତଫସିଲ ଭୁକ୍ତ ଜାତି ଓ ଉପଜାତିଙ୍କ ଶ୍ରମ ଦିବସ | (,,) | ୨.୪୭ |
| ୩) ମହିଳାଙ୍କ ଶ୍ରମ ଦିବସ | (,,) | ୧.୯୭ |
| ୪) ମୋଟ ଆର୍ଥିକ ବ୍ୟୟ | (,,) | ୨୨୭.୭୨ |

ଙ) ଇନ୍ଦିରା ଆବାସ ଯୋଜନା (I.A.Y)

| | | |
|---|---|---|
| ୧) ତଫସିଲଭୁକ୍ତ ଜାତି ଉପଜାତିଙ୍କୁ ଯୋଗାଇଥିବା ଗୃହ ସଂଖ୍ୟା | | ୨୧୨ |
| ୨) ମୋଟ ଆର୍ଥିକ ବ୍ୟୟ | (ଲକ୍ଷରେ) | ୨୦.୮୯ |

ଚ) ନିୟୁତ କୂପ ଯୋଜନା (M W S) :—

| | | |
|---|---|---|
| ୧) ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କୁ ଯୋଗାଇଥିବା ନିୟୁତ କୂପ ସଂଖ୍ୟା | | ୧୭୧ |
| ୨) ମୋଟ ଆର୍ଥିକ ବ୍ୟୟ | (ଲକ୍ଷରେ) | ୧୩.୨୭ |

ଛ) କଳାପଟା ଅଭିଯାନର ବିଦ୍ୟାଳୟ ଗୃହ ନିର୍ମାଣ (O.B B)

| | | |
|---|---|---|
| ୧) ମୋଟ ନିର୍ମାଣାଧୀନ ବିଦ୍ୟାଳୟ ଗୃହ ସଂଖ୍ୟା | | ୫୭ |
| ୨) ସଂପୂର୍ଣ୍ଣ ହୋଇଥିବା ବିଦ୍ୟାଳୟ ଗୃହ ସଂଖ୍ୟା | | ୪୮ |
| ୩) ମୋଟ ଆର୍ଥିକ ବ୍ୟୟ | (ଲକ୍ଷରେ) | ୪୪.୫୫ |

ଜ) ଜୈବିକ ଗ୍ୟାସ୍ ପ୍ଲାଣ୍ଟ (N.P.B.D)

| | | |
|---|---|---|
| ୧) ହିତାଧିକାରୀଙ୍କୁ ଯୋଗାଇ ଦିଆଯାଇଥିବା ମୋଟ ପ୍ଲାଣ୍ଟ ସଂଖ୍ୟା | | ୪୧୦ |
| ୨) ମୋଟ ଆର୍ଥିକ ସହାୟ | (ଲକ୍ଷରେ) | ୧୨.୦୩ |

ଝ) ଜାତୀୟ ଉନ୍ନତ ଚୁଲି ଯୋଜନା N.I.P.C

| | | |
|---|---|---|
| ୧) ହିତାଧିକାରୀଙ୍କୁ ଯୋଗାଇ ଦିଆଯାଇଥିବା ଚୁଲି ସଂଖ୍ୟା | | ୪୮୨୪ |
| ୨) ମୋଟ ଆର୍ଥିକ ସହାୟ | ଲକ୍ଷରେ | ୩.୨୨ |

ଶ୍ରୀ ବସନ୍ତ କୁମାର ମହାନ୍ତି, I.A.S.
ଜିଲ୍ଲାପାଳ-ତଥା-ଅଧ୍ୟକ୍ଷ

ଶ୍ରୀ ଦିଗମ୍ବର ମହାନ୍ତି, O.A.S. (I). S.B
ପ୍ରକଳ୍ପ ଅଧିକାରୀ

